# ତିଥିକୃତ୍ୟ ବ୍ୟବସ୍ଥା ।

ବ୍ୟବସ୍ଥା କଲ୍ପଦ୍ରୁମ ନାମକ ବଙ୍ଗଳା ପୁସ୍ତକରୁ

ଅନୁବାଦିତ ହୋଇ

ଶ୍ରୀ ବାବୁ ବୃନ୍ଦାବନଚନ୍ଦ୍ରଦେବଙ୍କ

ଦ୍ୱାରା

ପ୍ରକାଶିତ



ବାମଣ୍ଡା ଜଗନ୍ନାଥ ବଲ୍ଲଭ ପ୍ରେସରେ

ମୁଦ୍ରିତ

Printed by the

Jagannath Ballava Press

B A M R A

1888

ମୂଲ୍ୟ ୫୦।୵ ମାତ୍ର

# ସୂଚି ପତ୍ର


| ବିଷୟ | ପୃଷ୍ଠା | ପଙ୍କ୍ତି |
|---|---|---|
| ତିଥି ଶବ୍ଦର ଅର୍ଥ | ୧ | ୧ |
| ଅଥ କୃଷ୍ଣ ତିଥିର ବ୍ୟବସ୍ଥା | ୨ | ୧୦ |
| ,, ପ୍ରତିପଦ | ୮ | ୩ |
| ,, ଦ୍ୱିତୀୟା | ୧୧ | ୧ |
| ,, ତୃତୀୟା | ୧୪ | ୭ |
| ,, ଚତୁର୍ଥୀ | ୧୬ | ୩ |
| ,, ପଞ୍ଚମୀ | ୧୭ | ୧୩ |
| ,, ଭବିଷ୍ୟୋତ୍ତରେ ମାଘଶୁକ୍ଳ ପକ୍ଷମଧ୍ୟକୃତ୍ୟଂ | ୧୮ | ୧୦ |
| ,, ଷଷ୍ଠୀ | ୧୯ | ୧ |
| ,, ସପ୍ତମୀ | ୨୦ | ୧ |
| ,, କୁକ୍କୁଟୀବ୍ରତଂ | ୨୧ | ୧ |
| ,, ଅଷ୍ଟମୀ | ୨୩ | ୧୯ |
| ,, କୃଷ୍ଣା ଷ୍ଟମୀ | ୨୪ | ୧ |
| ,, କୃଷ୍ଣ ବ୍ରତକାଳ ବ୍ୟବସ୍ଥା | ୨୬ | ୨ |
| ,, କୃଷ୍ଣ ପାରଣବିଧି | ୨୯ | ୧୩ |
| ,, ଦୂର୍ବାଷ୍ଟମୀ | ୩୧ | ୬ |
| ,, ଦୂର୍ବାଷ୍ଟମୀର ଉପବାସ ଫଳ | ୩୨ | ୧୬ |
| ,, ଭୀଷ୍ମାଷ୍ଟମୀ | ୩୪ | ୧ |
| ,, ଅଶୋକାଷ୍ଟମୀ | ୩୪ | ୧୯ |
| ,, ନବମୀ | ୩୫ | ୧ |
| ,, ଶ୍ରୀ ରାମନବମୀ | ୩୬ | ୨ |
| ,, ଦଶମୀ | ୩୮ | ୧୨ |
| ,, ଦଶହରା | ୩୯ | ୧ |
| ,, ବିଜୟା ଦଶମୀ | ୪୦ | ୧ |
| ,, ଏକାଦଶୀ | | ୧୨ |

| ବିଷୟ | ପୃଷ୍ଠା | ପଙ୍କ୍ତି |
|---|---|---|
| ଅଥ ବ୍ୟତୀପାତଯୋଗ ... ... | ୪୧ ... ... | ୭ |
| ,, ଏକାଦଶୀର ବ୍ରତକାଳ ବ୍ୟବସ୍ଥା | ୪୩ ... ... | ୨୦ |
| ,, ଦ୍ୱାଦଶୀ ... ... | ୪୭ ... | ୧୪ |
| ,, ତ୍ରୟୋଦଶୀ ... ... ... | ୫୧ ... ... | ୬ |
| ,, ଚତୁର୍ଦ୍ଦଶୀ ... ... ... | ୫୫ ... ... | ୨୨ |
| ,, ଭୂତ ଚତୁର୍ଦ୍ଦଶୀ ... ... | ୫ ... ... | ୧୯ |
| ,, ପାଷାଣ ଚତୁର୍ଦ୍ଦଶୀ... ... | ୫୯ ... ... | ୧୩ |
| ,, ଶିବରାତ୍ରୀ ... ... | ୬୦ ... ... | ୯ |
| ,, ମଦନ ଚତୁର୍ଦ୍ଦଶୀ ... | ୬୨ ... ... | ୧୫ |
| ,, ପୌର୍ଣ୍ଣମାସୀ ... ... | ୬୩ ... ... | ୩ |
| ,, କୋଜାଗର କୃତ୍ୟଂ... ... | ୬୬ ... ... | ୩ |
| ,, ଅମାବସ୍ୟା ... ... | ୬୮ ... | ୧୧ |
| ,, ଦୀପାନ୍ୱିତା... ... | ,, ... ... | ୧୯ |
| ,, ସଂକ୍ରାନ୍ତି ବିଚାରଃ ... | ୭୧ ... ... | ୧୩ |
| ,, ନକ୍ଷତ୍ରଯୋଗେ ସଂକ୍ରାନ୍ତିର ନାମ | ୭୨ ... ... ... | ୪ |
| ,, ଦିବାସଂକ୍ରମଣେପୁଣ୍ୟକାଳବିଚାରଃ | ୭୩ ... ... | ୪ |
| ,, ରାତ୍ରସଂକ୍ରାନ୍ତି ବିଚାରଃ ... | ,, ... ... | ୨୪ |
| ,, ଗ୍ରହଣଂ ... ... ... | ୭୬ ... ... ... | ୧ |
| ,, ଶ୍ରାଦ୍ଧକାଳଂ ... ... | ୮୦ ... ... | ୨ |
| ,, ମାଘ ତ୍ରୟୋଦଶୀଶ୍ରାଦ୍ଧଂ ... | ୮୧ ... ... | ୧୧ |
| ,, ନବାନ୍ନ ଶ୍ରାଦ୍ଧଂ ... ... | ,, ... ... | ୧୪ |
| ,, ଶ୍ରାଦ୍ଧକାଳ କତ୍ତ୍ୱପଣଂ ... | ୮୫ ... ... | ୫ |
| ,, କୁତପକାଳ ମାନ୍ଥ ... ... | ୮୬ ... ... | ୧୯ |
| ,, ଏକୋଦ୍ଦିଷ୍ଟ ଶ୍ରାଦ୍ଧକାଳବ୍ୟବସ୍ଥା | ୮୯ ... | ୧୮ |
| ,, ପ୍ରେତଶ୍ରାଦ୍ଧ ବ୍ୟବସ୍ଥା ... | ୯୦ ... ... | ୧୬ |
| ,, ତର୍ପଣ ବିଧି ... | ୯୩ ... ... | ୧୭ |

# ( ଅଥ ତିଥିକୃତ୍ୟ ବ୍ୟବସ୍ଥା )

## ଅଥ ତିଥି ଶବ୍ଦର ଅର୍ଥ

ଅମାବସ୍ୟାଠାରୁ ପୌର୍ଣ୍ଣମାସୀ ପର୍ଯ୍ୟନ୍ତ, ପୌର୍ଣ୍ଣମାସୀଠାରୁ ଅମାବସ୍ୟା ପର୍ଯ୍ୟନ୍ତ ଶଶୀକଳା କ୍ରିୟାର ନାମ ତିଥି

ପ୍ରମାଣଂ

ଅମାଷୋଡଶଭାଗେନ ଦେବିପ୍ରୋକ୍ତା ମହାକଳା ।
ସଂସ୍ଥିତା ପରମାମାୟା ଦେହିନାଂ ଦେହଧାରିଣୀ ।
ଅମାଦି ପୌର୍ଣ୍ଣମାସ୍ୟାନ୍ତା ୟା ଏବ ଶଶିନଃ କଳାଃ ।
ତିଥୟସ୍ତାଃ ସମାଖ୍ୟାତା ଷୋଡ଼ଶୈବ ବରାନନେ ।
ହେମାଦ୍ରି କାଲ ମାଧବାରଯୋଃ ସ୍କାନ୍ଦେ ପ୍ରଭାସଖଣ୍ଡଂ ।

ଏବମ୍ଭୂତ ତିଥି ଦୁଇ ଭାଗରେ ବିଭକ୍ତ ଯଥା, ଶୁକ୍ଳ ଓ କୃଷ୍ଣ ଅମାବାସ୍ୟାର ପର ପ୍ରତିପଦ୍‌ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପଞ୍ଚଦଶ ତିଥିକୁ ଶୁକ୍ଳ ଏବଂ ପୂର୍ଣ୍ଣିମାର ପର ପ୍ରତିପଦ୍‌ଠାରୁ ପଞ୍ଚଦଶ ତିଥିକୁ କୃଷ୍ଣ କୋହାଯାଏ । ଏହି ପଞ୍ଚଦଶ ଦିବସ ଏକ ୨ ପକ୍ଷ ହୁଏ ଏହିରୂପ ପ୍ରକାର ଭେଦେ ଚନ୍ଦ୍ରର ହ୍ରାସବୃଦ୍ଧି ହୋଇ ଥାଏ । ସ୍ମୃତି ଭଟ୍ଟାଚାର୍ଯ୍ୟ ଏହିରୂପ ଲେଖି ଅଛନ୍ତି ( ଚନ୍ଦ୍ରବୃଦ୍ଧିକରଃ ଶୁକ୍ଳଃ କୃଷ୍ଣ ଶ୍ଚନ୍ଦ୍ରକ୍ଷୟାତ୍ମକଃ ) ଯେ ପଞ୍ଚଦଶ ଦିବସରେ ଚନ୍ଦ୍ରବୃଦ୍ଧି ହୁଅନ୍ତି ତାହାକୁ ଶୁକ୍ଳ ଓ ଯେ ପଞ୍ଚଦଶ ଦିବସରେ ଚନ୍ଦ୍ର ହ୍ରାସ ହୁଅନ୍ତି ତାହାକୁ କୃଷ୍ଣପକ୍ଷ କୋହାଯାଏ ଚାନ୍ଦ୍ରମାସେ ପ୍ରଥମେ ଶୁକ୍ଳ ପରେ କୃଷ୍ଣ ବ୍ୟବହୃତ ହୁଏ । ସକଳ ତିଥି ପ୍ରାୟ ଷାଠିଏ ଦଣ୍ଡ ପରିମାଣ ହୁଏ ।

ଷଷ୍ଟୀଦଣ୍ଡାତ୍ମିକା ତିଥିସ୍ତତ୍ପ୍ରମାଣ ଗ୍ରହମଣ୍ଡଳେ ।
ଅର୍କାଦ୍ବିନିସୃତଃ ପ୍ରାଚୀଂ ଯଦ୍ ଯାତ୍ୟହରହଃ ଶଶୀ ॥
ଭାଗୈ ର୍ଦ୍ୱାଦଶଭିସ୍ତତ୍ସ୍ୟାତ୍ତିଥି ଶ୍ଚାନ୍ଦ୍ର ମସଂ ଦିନଂ ।
ତ୍ରିଂଶାଂଶକ ସ୍ତଥା ଗ୍ରହେ ର୍ଭିଗଣଶ୍ଚ ଦ୍ୱିଧୀୟତେ ॥
ରାଶିରଷ୍ଟ ସମା ଖ୍ୟାତଃ ପଞ୍ଚାଶଦଧିକଂ ଶତଂ ॥

ସୂର୍ଯ୍ୟ ମଣ୍ଡଳଠାରୁ ବିନିସୃତହୋଇ ଚନ୍ଦ୍ର ଯେ ତ୍ରିଂଶଭାଗାତ୍ମକ ରାଶିର ଦ୍ୱାଦଶଭାଗ ଗମନକରନ୍ତି ତାହାକୁ ଏକ ୧ ତିଥି କହନ୍ତି । ରାଶିର ପରିମାଣ ଦ ୧୫୦ ଣ୍ଡ ସୁତରାଂ ତାହାର ତ୍ରିଂଶଭାଗର ଦ୍ୱାଦଶଭାଗେ ଷାଠିଏଦଣ୍ଡ ହେଲା ॥

---

ଅଥ ଜନ୍ମତିଥିର ବ୍ୟବସ୍ଥା

ପ୍ରତିବର୍ଷ ଜନ୍ମତିଥିରେ ଜନ୍ମତିଥିର ଓ ଜନ୍ମନକ୍ଷତ୍ରର ପୂଜାକରିବାକୁ ହୁଏ କିନ୍ତୁ ଯଦି ସେଥିରେ ମଳମାସ ପଡିଥାଏ ତେବେ ମଳ-ମାସରେ କରିବନାହିଁ ପରେ ଶୁଦ୍ଧ ମାସରେ କରିବ । ଜନ୍ମ ତିଥି ପୂଜାରେ ଗୌଣଚାନ୍ଦ୍ର ମାସ ଉଲ୍ଲେଖ କରିବ । ଜନ୍ମ ତିଥି ଦିବସରେ ସ୍ନାନ ଓ ଶୁଚିହୋଇ ଏହି ସମସ୍ତ ଦେବତାଙ୍କର ପୂଜାକରିବ

ଯଦ୍ୟଥା ; —

ଗୁରୁଦେବାଗ୍ନି ବିପ୍ରାଶ୍ଚ ପୂଜନୀୟାଃ ପ୍ରଯତ୍ନତଃ ।
ସ୍ୱନକ୍ଷତ୍ରଞ୍ଚ ପିତରୌ ତଥାଦେବଃ ପ୍ରଜାପତିଃ ।
ପ୍ରତିସମ୍ବତ୍ସରଞ୍ଚୈବ କର୍ତ୍ତବ୍ୟଶ୍ଚ ମହୋତ୍ସବଃ ।
ଇତିବ୍ରହ୍ମପୁରାଣଂ ।

ଜନ୍ମ ତିଥି ପ୍ରାପ୍ତହେଲେ ଗୁରୁ, ଦେବତା, ଅଗ୍ନି, ବ୍ରାହ୍ମଣ,

ସ୍ଥ, ନକ୍ଷତ୍ର, ପିତା, ମାତା ଓ ବ୍ରହ୍ମାଙ୍କର ପୂଜାକରିବାଏବ ସେଥି ନିମନ୍ତ ମହୋତ୍ସବ ଓ ବ୍ରାହ୍ମଣଭୋଜନାଦି କରାଇବ ଜନ୍ମ ତିଥିରେ ଷଟ୍ ତିଳ କରିବାକର୍ତ୍ତବ୍ୟ, ଅର୍ଥାତ୍ ତିଳୋଦ୍ୱର୍ତ୍ତନ, ତିଳୋଦକେ ସ୍ନାନ, ତିଳଦ୍ୱାରାହୋମ, ତିଳଦାନ, ତିଳଭୋଜନ, ତିଳବପନ କରିବ । ପ୍ରମାଣଂ

ତିଳୋଦ୍ୱର୍ତ୍ତୀ ତିଳ ସ୍ନାୟୀ ତିଳହୋମୀ ତିଳପ୍ରଦଃ ।
ତିଳ ଭୁକ୍ ତିଳ ବାପୀଚ ଷଟ୍ ତିଳୀ ନାବସୀଦତି ।
ଇତି ସ୍ମୃତିଃ ।

ଜନ୍ମ ତିଥିରେ ସପ୍ତ ଚିରଜୀବୀ ଏବ ମାର୍କଣ୍ଡେୟଙ୍କର ପୂଜା-କରିବ ।

ସପ୍ତ ଚିରଜୀବୀ ଯଥା

ତତୋ ଦୀର୍ଘାୟୁଷଂ ବ୍ୟାସଂ ରାମଂ ଦ୍ରୌଣିଂ କୃପଂ ବଳିଂ ।
ପ୍ରହ୍ଲାଦଞ୍ଚ ହନୂମନ୍ତଂ ବିଭୀଷଣମଥାର୍ଚ୍ଚୟେତ୍ ।
ଇତି କାମ୍ୟା ସୂନଃ ।

ବ୍ୟାସ, ପରଶୁରାମ, ଅଶ୍ୱତ୍ଥାମା, କୃପ, ବଳି, ପ୍ରହ୍ଲାଦ, ହନୂମାନ୍ ଓ ବିଭୀଷଣ ଏମାନେ ଚିର ଜୀବୀହେତୁରୁ ଏମାନଙ୍କୁ ଅର୍ଚ୍ଚନାକରିବ ଅଉ ଷଷ୍ଠୀ ଓ ମାର୍କଣ୍ଡେୟଙ୍କର ପୂଜାକରି ମାର୍କଣ୍ଡେୟ ଙ୍କ ନିକଟରେ ଏହା ପ୍ରାର୍ଥନା କରିବ ।

ଚିରଜୀବୀ ଯଥା ତ୍ୱଂଭୋ ଭବିଷ୍ୟାମି ତଥା ମୁନେ ।
ରୂପବାନ୍ ବିତ୍ତବାଂଶ୍ଚୈବ ଶ୍ରିୟାଯୁକ୍ତଶ୍ଚ ସର୍ବଦା ।
ମାର୍କଣ୍ଡେୟ ମହାଭାଗ ସପ୍ତକଳ୍ପାନ୍ତ ଜୀବନ ।
ଆୟୁ ରିଷ୍ଟାର୍ଥସିଦ୍ଧ୍ୟର୍ଥଂ ମସ୍ମାକଂ ବରଦୋଭବ ।

ଯଦି ଜନ୍ମ ନକ୍ଷତ୍ର ସ୍ମରଣ ନ ହୁଏ ତେବେ ( ସ୍ୱ ନକ୍ଷତ୍ରାୟ ନମଃ ) ଏହି ରୂପ ଉଲ୍ଲେଖ କରି ପାଦ୍ୟାଦିଦ୍ୱାରା ପୂଜାକରିବ । ସାମାନ୍ୟତଃ ଏହି ରୂପ ପୂଜାରବଧି ଯଥା,- ସ୍ନାନାନ୍ତର ପ୍ରଥମତଃ ଷଷ୍ଠୀ ପୂଜା ପରେ ସଙ୍କଳ୍ପ କରି ଉକ୍ତ ପୂଜ୍ୟ ସକଳର ପୂଜାକରିବ । ଷଷ୍ଠୀ ପୂଜା ବ୍ୟତିରେକେ କୌଣସି ପୂଜାର ଫଳ ଲାଭ ହୁଏ ନାହିଁ । ପ୍ରମାଣଂ

ସର୍ବମଙ୍ଗଳ ମାଙ୍ଗଲ୍ୟଂ ବରେଣ୍ୟଂ ବରଦଂ ଶୁଭଂ ।
ନାରାୟଣଂ ନମସ୍କୃତ୍ୟ ସର୍ବକର୍ମାଣି କାରୟେତ୍ ॥

ତାହାର ପର ପୂଜିତ ଦେବତାମାନଙ୍କ ପୂଜାକରଣାନ୍ତେ ହୋମକରିଲେ ହୋମସଂଖ୍ୟା ଅଷ୍ଟୋତ୍ତରଶତ ଅନ୍ତତଃ ଅଷ୍ଟୋତ୍ତରଶତ ଦାନ କରିବା ବିଧେୟ କାରଣ ଅଷ୍ଟୋତ୍ତରଶତ ବ୍ୟତୀତ ହୋମ ପ୍ରସିଦ୍ଧ ନୁହେ । ଅଶକ୍ତେ ଯଥାଶକ୍ତି କଲେ ମଧ୍ୟ ଦୋଷନାହିଁ । ପ୍ରମାଣଂ ଦେବୀପୁରାଣଂ ।

ହୋମୋ ଗ୍ରହାଦିପୂଜାୟାଂ ଶତମଷ୍ଟୋତ୍ତରଂ ଭବେତ୍ ।
ଅଷ୍ଟାବିଂଶତି ରଷ୍ଟୌବା ଯଥା ଶକ୍ତି ବିଧୀୟତେ ॥

ତତ୍ପରେ ଦକ୍ଷିଣାନ୍ତ ଓ ବ୍ରାହ୍ମଣ ଭୋଜନାଦି କରାଇ ବିହିତ କର୍ମ ଅର୍ଥାତ୍ ଜନ୍ମତିଥି ପୂଜାଙ୍ଗୀଭୂତ ସଜ୍ଜିବ ମତ୍ସ୍ୟ ଜଳେତ୍ୟାଗ ଓ ଦରିଦ୍ରମାନଙ୍କୁ ଯଥାଶକ୍ତି ଦାନକରିବ ଆଉ ସେହି ଦିବସ ଆମୋଦ ପ୍ରମୋଦଦ୍ୱାରା ଅତି ବାହିତ କରିବ ।

ଜନ୍ମତିଥି ଦିବସରେ କେଶଚ୍ଛେଦନାଦି କ୍ଷୌରକର୍ମ ଦୂରଗମନ, ମୈଥୁନ, ଆମିଷଭକ୍ଷଣ, ବିବାଦ ଓ ହିଂସା, କରିବନାହିଁ ଅର୍ଥାତ୍ ଏସମସ୍ତ ପରିତ୍ୟାଗ କରିବ ।

ପ୍ରମାଣଂ ସ୍କନ୍ଦପୁରାଣେ ।

ଖଣ୍ଡନଂ ନଖ କେଶାନାଂ ମୈଥୁନା ଧ୍ୟାନମେବଚ ।
ଅନିଷ୍ଟଂ କଳହଂ ହିଂସା ବର୍ଷ ବୃଦ୍ଧୌ ବିବର୍ଜ୍ଜୟେତ୍ ॥

ଏ ସ୍ଥଳେ ବର୍ଷବୃଦ୍ଧି ଶବ୍ଦର ଅର୍ଥ ଜନ୍ମଦିନ । ଅଉ ଅଧ୍ୱାନ ଶବ୍ଦର ଅର୍ଥ ଦୂର ଗମନ ।

ଅନ୍ୟଚ୍ଚ ଜ୍ୟୋତିଷେ ।

ସ୍ନାତ୍ୱା ଜନ୍ମଦିନେ ସ୍ତ୍ରିୟଂ ପରିହରନ୍ ପ୍ରାପ୍ନୋତ୍ୟଭୀଷ୍ଟାଂ ଶ୍ରିୟଂ
ମର୍ତ୍ତ୍ୟାନ୍ନୋଚୟତୋ ଦ୍ୱିଜାୟ ଦଦତୋ ଯସ୍ୟାୟୁଶ୍ଚିରଂ ବର୍ଦ୍ଧତେ ॥
ଶତ୍ରୂନ୍ ଖାଦତି ଯସ୍ତୁ ତସ୍ୟ ରିପବୋ ନାଶଂ ପ୍ରଯାନ୍ତ୍ୟଧ୍ରୁବଂ
ଭୁଙ୍କ୍ତେ ଯସ୍ତୁ ନିରାମିଷଂ ସହ୍ୱଭବେତ୍ ଜନ୍ମାନ୍ତରେ ପଣ୍ଡିତଃ ॥

ଜନ୍ମ ଦିନ ସ୍ତ୍ରୀସଙ୍ଗ ନକଲେ ଅଭୀଷ୍ଟ ଫଳଲାଭ ମର୍ତ୍ତ୍ୟଜଳରେ ସ୍ନାନକଲେ ଓ ବ୍ରାହ୍ମଣକୁ ଦାନକଲେ ଆୟୁର୍ବୃଦ୍ଧି ଶତ୍ରୁ ଅର୍ଥାତ୍ ଗରୁ ଭକ୍ଷଣକଲେ ଶତ୍ରୁ ନାଶ ଓ ନିରାମିଷ ଭକ୍ଷଣକଲେ ଜନ୍ମାନ୍ତରେ ପଣ୍ଡିତ ହୁଅନ୍ତି ।

ଯାହାର ଜନ୍ମ ତିଥି ଶନି ବା ମଙ୍ଗଳବାରେ ପଡେ ଏବଂ ଜନ୍ମ ନକ୍ଷତ୍ର ସହିତ ଯୋଗ ନଥାଏ ତାହାହେଲେ ସେ ବର୍ଷର ତାହାର ପଦେ ୨ ବିପଦ ଘଟେ । ତାର ପ୍ରତିକାର ନିମନ୍ତେ ସର୍ବୌଷଧି ଜଳେସ୍ନାନ ଓ ଗ୍ରହ ମାନଙ୍କର ଉଦ୍ଦେଶ୍ୟରେ ଗ୍ରହ ବିପ୍ରଙ୍କୁ ଦାନ ଓ ଗ୍ରହର ଅର୍ଚ୍ଚନ ଓ ତଦୁଦ୍ଦେଶେ ହୋମାଦି କରିବ ।

ଯଦି ନକ୍ଷତ୍ର ଯୋଗ ନଥାଏ ତେବେ ସ୍ୱର୍ଣ୍ଣ, ଓ ଅଶୁଭ ବାରଯୋଗେ ମୁକ୍ତା ଦାନ କରିବ ।

ପ୍ରମାଣଂ

କୁତାନ୍ତ କୁଜୟୋର୍ବାରେ ଯସ୍ୟ ଜନ୍ମ ଦିନଂ ଭବେତ୍ ।

ଅନୃକ୍ଷ ଯୋଗ ସଂପ୍ରାପ୍ତେ ବଦ୍ଧସ୍ତସ୍ୟ ପଦେପଦେ ॥
ତସ୍ୟ ସର୍ବୌଷଧିସ୍ନାନଂ ତତ୍ରବପ୍ର ସୂଚିତଂ ।
ସୌଗ୍ରହସ୍ଯୋ ର୍ଦିନେମୁକ୍ତା ଦେୟୂା ନୃକ୍ଷେତ କାଞ୍ଚନଂ ॥

ଇତି ଶାପବାକ୍ୟଂ ।

ମୁଗ୍ରମାଂସୀ ବଚ୍ଚକୁଷ୍ଟଂ ଶୈଳେୟଂ ରଜନୀଦ୍ୱୟଂ ।
ଶଠୀ ଚମ୍ପକ ମୁସ୍ତଞ୍ଚ ସର୍ବୌଷଧିଗଣଃସ୍ମୃତଃ ॥

ଆୟୁର୍ବେଦୋକ୍ତ ପରିଭାଷା

ମୁଗ୍ ମାଂସୀ, ବଚ, କୁଡ଼, ଶୈଳଜ, ହରିଦ୍ରା ଓ ଦାରୁ-ହରିଦ୍ରା, ଶଠୀ, ଚମ୍ପକ, ଓ ମୁଥା ଏହି କେତେପ୍ରକାର ଦ୍ରବ୍ୟ ମିଶ୍ରିତ ଜଳକୁ ସର୍ବୌଷଧି ଜଳକହନ୍ତି ।

ପୂର୍ବୋକ୍ତ ଦେବତାମାନଙ୍କୁ ପୂଜାକରି ସ୍ୱୟଂ ( ଯାହାର ଜନ୍ମ ଭଥିର ପୂଜା ହୋଇଥାଏ ) ସେହି ଜନ୍ମ ଲଗିତ ମନ୍ତ୍ର ପାଠପୂର୍ବକ ପ୍ରାର୍ଥନା କରିବ ତଦ୍ଯଥା ।

ତ୍ରୈଲୋକ୍ୟେ ଯାନିଭୂତାନି ସ୍ଥାବରାଣି ଚରାଣିଚ ।
ବ୍ରହ୍ମବିଷ୍ଣୁ ଶିବୈଃସାର୍ଦ୍ଧଂ ରକ୍ଷାଂ କୁର୍ବନ୍ତୁ ତାନିମେ ॥

ଇତି ମନ୍ତ୍ର୍ୟପୁରାଣ ।

ଶୂଦ୍ରସ୍ୱୟଂ ଏହିମନ୍ତ୍ର ପାଠକରିବନାହିଁ ତାହାରମନ୍ତ୍ର ପାଠରେ ଅଧି-କାରନାହିଁ ବ୍ରାହ୍ମଣ ଦ୍ୱାରା ମନ୍ତ୍ର ପାଠକରାଇଲେ ତାହାର ପାଠର ଫଳହେବ । ଶୂଦ୍ର କେବଳ ଶ୍ରବଣ କରିବେ ଅଧ୍ୟୟନ କରିବେ ନାହିଁ ତାହାର ପ୍ରମାଣ ଭବିଷ୍ୟପୁରାଣେ ( ଶ୍ରୋତବ୍ୟ ମିହ ଶୂଦ୍ରେଣ ନାଧ୍ୟେତବ୍ୟଂ କଦାଚନ ) ଏହିରୂପ ଲେଖାଅଛି । ଆଉ ବ୍ରାହ୍ମଣଙ୍କଦ୍ୱାରା ପାଠକରଣ ବିଷୟର ପ୍ରମାଣଯଥା ।

ଅଯୁତମେବବଧିଃ ପ୍ରୋକ୍ତଃ ଶୂଦ୍ରାଣାଂ ମନ୍ତ୍ରବର୍ଜ୍ଜିତଃ ।
ଅମନ୍ତ୍ରସ୍ୟତୁ ଶୂଦ୍ରସ୍ୟ ବିପ୍ରମନ୍ତ୍ରେଣ ଗୃହ୍ୟତେ ।

ଇତିଯୋଗୀ ଯାଜ୍ଞବଲ୍କ୍ୟଃ ।

ଯଦିଜନ୍ମତିଥି ଉଭୟଦିନେ ପ୍ରାପ୍ତହୁଏ ଅର୍ଥାତ୍ ଦୁଇଦିନର ପୂର୍ବାହ୍ନେ ଉକ୍ତତିଥିଥାଏ ତେବେଉଦୟ ଗାମିନୀ ତିଥିର ଗ୍ରାହ୍ୟ ଅର୍ଥାତ୍ ଯେଉଁ ଦିନ ସୂର୍ଯ୍ୟ ଉଦୟହୋଇ ଅଛନ୍ତି ସେହିଦିନ ଜନ୍ମ ତିଥି ପୂଜାର ବିଧି ସେଥିରେ ଯୁଗ୍ମାଦିର ନାହିଁ ପ୍ରମାଣଂ ।

ଯୁଗାଦ୍ୟା ବର୍ଷ ବୃଦ୍ଧିଶ୍ଚ ସପ୍ତମୀ ପାର୍ବ୍ବତୀପ୍ରିୟା ।
ରବେ ରୁଦୟ ମୀକ୍ଷନ୍ତେ ନତତ୍ର ତିଥିଯୁଗ୍ମତେତି ॥

ଦେବୀ ପୁରାଣେ ।

ଯଦି ଦୁଇଦିନରେ ଏକ ନକ୍ଷତ୍ର ହୁଏ ଅର୍ଥାତ୍ ଜନ୍ମ ନକ୍ଷତ୍ର ଦୁଇ ଦିନରେ ଥାଏ ତାହା ହେଲେ ମଧ୍ୟ ଉଦୟ ଯୁକ୍ତ ନକ୍ଷତ୍ର ପ୍ରଶସ୍ତ ।

ତନ୍ନକ୍ଷତ୍ର ମହୋରାତ୍ରଂ ଯସ୍ମିନ୍ନସ୍ତଂ ଗତୋରବିଃ ।
ଯସ୍ମିନ୍ନୁଦେତି ସବିତା ତନ୍ନକ୍ଷତ୍ରଂ ଦିନଂ ସ୍ମୃତଂ ।

ଇତି ବୌଧାୟନ ମାର୍କଣ୍ଡେୟୌ ।

ଯଦି ଉଭୟ ଦିନରେ ପୂର୍ବାହ୍ନେ ତିଥିଯୋଗ ହୁଏ କିନ୍ତୁ ପୂର୍ବ ଦିନର ନକ୍ଷତ୍ର ଯୋଗ ଥାଏ ପରଦିନ ନକ୍ଷତ୍ର ଯୋଗ ନଥାଏ ଏମନ୍ତ ସମୟରେ ପୂର୍ବଦିନରେ ଜନ୍ମତିଥି କରିବାକୁ ହେବ ।

ପ୍ରମାଣଂ ଯଥା

ଘସ୍ରଦ୍ୱୟେ ଜନ୍ମତିଥିର୍ଯଦାସ୍ୟାତ୍, କୁର୍ଯ୍ୟାତ୍ତଦା ଜନ୍ମଭ ସଯୁତାଚ ॥

## ପ୍ରସଙ୍ଗଭାବେନ ଦିନ ଦ୍ୱୟେଽପି , ପୂଜ୍ୟା ପରାଯା ଭବତୀତି ଯସ୍ମାତ୍ ଇତ ଜନ୍ମତିଥି ବ୍ୟବସ୍ଥା

---

ଅଥ ପ୍ରତିପତ୍

ତ୍ରିସନ୍ଧ୍ୟା ବ୍ୟାପିନୀ ଯାତୁ ସୈବ ପୂଜ୍ୟାସଦା ତିଥିଃ ।
ନ ତତ୍ରଯୁଗ୍ମାଦରଣ ମନ୍ୟତ୍ର ହରିବାସରାତ୍ ।
ଇତ ପରାଶରଃ ।

ଯେ ପ୍ରତିପତ୍ ତ୍ରିସନ୍ଧ୍ୟା ବ୍ୟାପିନୀ ହୁଏ ସେହି ପ୍ରତିପତ୍ ଗ୍ରାହ୍ୟ ହେବାକୁ ଯୁଗ୍ମାଦରତା ଅର୍ଥାତ୍ ଦୁଇତିଥିର ପୂଜ୍ୟତ୍ୱ ନାହିଁ । କେବଳ ତ୍ରିସନ୍ଧ୍ୟା ବ୍ୟାପିନୀ ଯେତିଥି ସେହି ପୂଜ୍ୟ ହୁଏ ଏହା ସର୍ବତ୍ର ରେ ହୋଇଥାଏ କେବଳ ହରିବାସରେ ତାହାର ପ୍ରକାର ଭେଦଅଛି

ଦ୍ୱିତୀୟା ପଞ୍ଚମୀ ବେଧା ଦଶମୀଚ ତ୍ରୟୋ ଦଶୀ ।
ଚତୁର୍ଦ୍ଦଶୀ ଚୋପବାସେ ହନ୍ୟୁଃ ପୂର୍ବୋତ୍ତରେ ତିଥୀଃ ।
ଇତି ବୃହସ୍ପତିଃ ।

କୃଷ୍ଣ ପ୍ରତିପଦରେ ଦ୍ୱିତୀୟା ଯୁକ୍ତା ଓ ଶୁକ୍ଳ ପ୍ରତିପଦରେ ଅମାବାସ୍ୟା ଯୁକ୍ତା ଆଦରଣୀୟ କିନ୍ତୁ ଉପବାସସ୍ଥଳେ ଏପରି ବ୍ୟବସ୍ଥା ନୁହେ ଅର୍ଥାତ୍ ପ୍ରତିପଦ୍ ଦିବସେ ଉପବାସ କଲେ କୃଷ୍ଣା ଦ୍ୱିତୀୟା ଯୁକ୍ତା ପ୍ରତିପଦ୍ ରେ ଉପବାସ କରିବ ।

ବୀର ପ୍ରତିପଦା ନାମ ତବାଭୂତା ମହୋତ୍ସବଃ
ତତ୍ରାଂ ନର ଶାର୍ଦ୍ଦୂଲ ଦୃଷ୍ଟାଃ ପୁଷ୍ଟାଃ ସ୍ୱଳଂକୃତାଃ ।
ପୁଷ୍ପ ଦୀପ ପ୍ରଦାନେନ ପୂଜୟିଷ୍ୟନ୍ତି ମାନବାଃ ।
ବଳିମ୍ପ୍ରତ ଭଗବଦ୍ବାକ୍ୟଂ ।

କାର୍ତ୍ତିକ ମାସର ଶୁକ୍ଳ ପକ୍ଷୀୟ ପ୍ରତିପଦିବସରେ ବଳିରାଜାଙ୍କର ପୂଜାକରିବାକୁ ହୁଏ । ଉକ୍ତ ଦିବସରେ ବଳିରାଜାଙ୍କୁ ପୂଜାକଲେ ମନୁଷ୍ୟ ହୃଷ୍ଟପୁଷ୍ଟ ଓ ବହୁ ବିତ୍ତଶାଳୀ ହୁଏ । ଆଉ ଏହିରୂପ ପୂଜାକରି ରାତ୍ରି ଜାଗରଣ କରିବ ।

ଏହି ପ୍ରତିପତ୍ତିକୁ କେହି ୨ ଦ୍ୟୂତ ପ୍ରତିପଦ୍ କହନ୍ତି ତତ୍ର ପ୍ରମାଣଂ

ଶଙ୍କରଶ୍ଚ ପୁରା ଦ୍ୟୂତଂ ସସର୍ଜ୍ଜ ସୁମନୋହରଂ ।
କାର୍ତ୍ତିକେ ଶୁକ୍ଳ ପକ୍ଷେତୁ ପ୍ରଥମେଽହ୍ନି ଭୂପତେ ॥
ଜିତଶ୍ଚ ଶଙ୍କରସ୍ତତ୍ର ଜୟଂ ଲେଭେଚ ପାର୍ବ୍ବତୀ ।
ଅତୋଽର୍ଥା ଶଙ୍କରୋ ଦୁଃଖୀ ଗୌରୀନିତ୍ୟଂ ସୁଖୋଷିତା ॥
ତସ୍ମାଦ୍ଦ୍ୟୂତଂ ପ୍ରକର୍ତ୍ତବ୍ୟଂ ପ୍ରଭାତେ ତତ୍ରମାନବୈଃ ।
ତସ୍ମିନ୍ ଦ୍ୟୂତେ ଜୟୋ ଯସ୍ୟ ତସ୍ୟ ସମ୍ବତ୍ସରଃ ଶୁଭଃ ॥
ପରାଜୟୋ ବିରୁଦ୍ଧସ୍ତୁ ଲବ୍ଧନାଶ କରୋଭବେ ଦିତି ।

ବ୍ରହ୍ମ ପୁରାଣଂ ।

କାର୍ତ୍ତିକ ମାସର ପ୍ରଥମ ଦିବସରେ ହରଗୌରୀ ଦ୍ୟୂତକ୍ରୀଡ଼ା କରୁଥିଲେ ଏହି ନିମିତ୍ତ ଦ୍ୟୂତପ୍ରତିପଦ୍ କହନ୍ତି ସେହି କ୍ରୀଡ଼ାରେ ଶଙ୍କର ପରାଜୟ ଓ ଶଙ୍କରୀ ଜୟଲାଭ କରିଥିଲେବୋଲି ଶିବ ଦୁଃଖୀ ଓ ଦୁର୍ଗା ସୁଖିନୀହୋଇ ଥିଲେ । ଅଧୁନା ମନୁଷ୍ୟ ସକଳ ଉକ୍ତ ଦିବସରେ ଦ୍ୟୂତକ୍ରୀଡ଼ା କରନ୍ତି ସେଥିରେ ଯାହାର ଜୟ ଲାଭହୁଏ ତାହାର ସେସମ୍ବତ୍ସରଜୟ ଓ ଯେ ପରାଜୟ ହୁଏ ତାର ସେସମ୍ବତ୍ସରରେ ପରାଜୟ ହୁଏ ପରନ୍ତୁ ବତ୍ସରର ଫଳାଫଳ ଜାଣିବା ନିମନ୍ତ ଉକ୍ତ ଦିବସରେ ଦ୍ୟୂତକ୍ରୀଡ଼ା ବିଧେୟ । ଆଉ ଏହି ତିଥିରେ ଯଦି ଗଙ୍ଗାସ୍ନାନ ଓ ଦାନକରନ୍ତି ତେବେ ଶତଗୁଣପୁଣ୍ୟହୁଏ ।

( ସ୍ନାନଂ ଦାନଂ ଶତଗୁଣଂ କାର୍ତ୍ତିକେ ୧ ସ୍ୟାନ୍ତୁଥୌ ଭବେତ୍ )

ଯଦି ଅଗ୍ରହାୟଣ ମାସର କୃଷ୍ଣପକ୍ଷରେ ପ୍ରତିପଦ୍ ରୋହିଣୀ ନକ୍ଷତ୍ର ଯୁକ୍ତାହୁଏ ଏବଂ ସେଥିରେ ଯଦି ଗଙ୍ଗା ସ୍ନାନକରେ ତେବେ ଶତସୂର୍ଯ୍ୟ ଗ୍ରହଣ କାଳୀନ ଗଙ୍ଗାସ୍ନାନ ଫଳ ପ୍ରାପ୍ତହୁଏ ପ୍ରମାଣଂ ଭବିଷ୍ୟ ପୁରାଣେ ।

ରୋହିଣ୍ୟାପ୍ରତିପଦ୍ଯୁକ୍ତା ମାର୍ଗେ ମାସି ସିତେତର୍ ।
ଗଙ୍ଗାୟାଂ ଯଦି ଲଭ୍ୟେତ ସୂର୍ଯ୍ୟଗ୍ରହଣତୈଃ ସମାଃ ।

ଅନ୍ୟଚ

ନନ୍ଦାସୁ ନାଭ୍ୟଙ୍ଗ ମୁପାଚରେତ ,
କ୍ଷୌରଞ୍ଚ ରିକ୍ତାସୁ ଜୟାସୁ ମାଂସଂ ।
ପୂର୍ଣ୍ଣାସୁ ଯୋଷିତ୍ ପରିବର୍ଜନୀୟା ,
ଭଦ୍ରାସୁ ସର୍ବାଣି ସମାଚରେତ ।

ବାମନ ପୁରାଣଂ

ପ୍ରତିପଦ୍ , ଷଷ୍ଠୀ , ଏକାଦଶୀ ନନ୍ଦା; ଦ୍ୱିତୀୟା ,ସପ୍ତମୀ ଦ୍ୱାଦଶୀ, ଭଦ୍ରା ; ତୃତୀୟା , ଅଷ୍ଟମୀ , ତ୍ରୟୋଦଶୀ , ଜୟା ; ଚତୁର୍ଥୀ , ନବମୀ , ଚତୁର୍ଦ୍ଦଶୀ , ରିକ୍ତା ; ଆଉ ପଞ୍ଚମୀ , ଦଶମୀ , ଅମାବାସ୍ୟା ଓ ପୂର୍ଣ୍ଣିମାତିଥିରେ ପୂର୍ଣ୍ଣାତିଥି ହୁଏ । ଏହି ସମସ୍ତ ତିଥିରେ ଅର୍ଥାତ୍ ନନ୍ଦାରେ ତୈଳ ମର୍ଦ୍ଦନ , ରିକ୍ତାରେ କ୍ଷୌର କରଣ, ଜୟାରେ ମାଂସଭକ୍ଷଣ , ପୂର୍ଣ୍ଣାରେ ସ୍ତ୍ରୀସଙ୍ଗକରଣ ନିଷିଦ୍ଧ । ଆଉ ଭଦ୍ରା ତିଥିରେ ଉକ୍ତ ସର୍ବପ୍ରକାର କର୍ମ କରାଯାଇପାରେ ।

ଏତଦ୍ଭିନ୍ନ ପ୍ରତିପଦାଦି ପଞ୍ଚଦଶତିଥିରେ ଯେ ଦ୍ରବ୍ୟ ଭକ୍ଷଣ କରିବାର ନିଷିଦ୍ଧ ଅଛି ତାହା ପରେ ସ୍ଥାନ ବିଶେଷରେ ଲେଖା ହେବ ।

---

## ଅଥ ଦ୍ୱିତୀୟା

ପ୍ରତିପତ୍ ସଦ୍ୱିତୀୟାସ୍ୟାତ୍ ଦ୍ୱିତୀୟା ପ୍ରତିପଦ୍ ଯୁତା ।

ଇତି ଅପସ୍ତମ୍ଭଃ

ଯେ ଦ୍ୱିତୀୟା ପ୍ରତିପଦ୍ଯୁକ୍ତା ସେହି ଦ୍ୱିତୀୟା ଗ୍ରାହ୍ୟା । ଶୁକ୍ଳା ଓ କୃଷ୍ଣା ଉଭୟ ପକ୍ଷରେ ପ୍ରସିଦ୍ଧ । କିନ୍ତୁ କେହି ୨ ( ପର ଯୁକ୍ତା ଗ୍ରାହ୍ୟା ) ଏହିରୂପ କହିଅଛନ୍ତି ।

ଉପବାସ ବିଧିରେ ଯେ ସକଳ ତିଥି ଅଛି ତାହାର ପରଯୁକ୍ତା ଓ ପୂର୍ବଯୁକ୍ତା ଦୁଇପ୍ରକାର ପ୍ରଭେଦ ଅଛି ତାହା ଏହି ।

ଦ୍ୱିତୀୟୈକାଦଶୀ ଷଷ୍ଠୀ ତଥାଚୈବାଷ୍ଟମୀ ତିଥିଃ ।
ବେଧା ଦଧସ୍ତାଦ୍ଧନ୍ୟସ୍ତା ଉପବାସେ ଇଥୀସ୍ତିମାଃ ॥

ଇତି ନାରଦଃ ।

ଦ୍ୱିତୀୟା , ଏକାଦଶୀ, ଅଷ୍ଟମୀ , ତ୍ରୟୋଦଶୀ , ଓ ଅମାବାସ୍ୟା ଏମାନେ ଉପବାସ ବିଧିରେ ପରଯୁକ୍ତା ଗ୍ରାହ୍ୟାନୁହନ୍ତି । ପରନ୍ତୁ ଏମାନେ କୃଷ୍ଣାତିଥିସ୍ଥଳେ ଏହିନିୟମଘଟିବ । ଶୁକ୍ଳରେନାହିଁ ।

ଏକାଦଶ୍ୟଷ୍ଟମୀ ଷଷ୍ଠୀ ଦ୍ୱିତୀୟାଚ ଚତୁର୍ଦ୍ଦଶୀ ।
ତ୍ରୟୋଦଶ୍ୟପ୍ୟମାବସ୍ୟା ଉପୋନ୍ୟାସଃ ପରାନ୍ୱିତା ।

ଇତିକଷ୍ଟୁ ରହସ୍ୟଂ ।

ଶୁକ୍ଳପକ୍ଷୀୟ ଏକାଦଶୀ ଅଷ୍ଟମୀ ଷଷ୍ଠୀଦ୍ୱିତୀୟା ଚତୁର୍ଦ୍ଦଶୀ ତ୍ରୟୋଦଶୀ ଓ ଅମାବାସ୍ୟା ଏହିସବୁ ଉପବାସବିଧିରେ ପରଯୁକ୍ତାଗ୍ରାହ୍ୟ,

ଆଷାଢ଼ସ୍ୟ ଶିତେପକ୍ଷେ ଦ୍ୱିତୀୟା ପୁଷ୍ୟସଂଯୁତା ।
ତସ୍ୟାଂ ରଥେସମାରୋପ୍ୟ ରାମଂ ମାଂ ଭଦ୍ରୟାସହ ।
ଯାତ୍ରୋତ୍ସବଂ ପ୍ରକୁର୍ବୀତ ପ୍ରୀଣୟେଚ୍ଚ ଦ୍ୱିଜାନ୍ ବହୂନ୍ ।

ରକ୍ଷାଭୂବେ ତଥୈ କାର୍ଯ୍ୟା ସଦା ସାପ୍ରୀତୟେମମ ।

ସ୍କନ୍ଦପୁରାଣଂ

ଆଷାଢ଼ ଶୁକ୍ଳପକ୍ଷୀୟ ପୁଷ୍ୟାନକ୍ଷତ୍ରସଂଯୁତା ଦ୍ୱିତୀୟା ତିଥିରେ ଶ୍ରୀଜଗନ୍ନାଥଦେବଙ୍କ ରଥଯାତ୍ରା ହୁଏ । ଏଥିନିମନ୍ତେ ସେହିଦିନ ଯାତ୍ରା ମହୋତ୍ସବ ଓ ବହୁବ୍ରାହ୍ମଣ ଭୋଜନ କରାଇବ ଯଦ୍ୟପି ନକ୍ଷତ୍ରଯୁକ୍ତ ନହୁଏ ତଥାପି ତିଥିର ମାହାତ୍ମ୍ୟ ନିମନ୍ତେ ଉକ୍ତକର୍ମ କରିବ୍ୟ ସେଥିରେ ଭଗବାନଙ୍କର ଅତିଶୟ ପ୍ରୀତିହୁଏ ।

କାର୍ତ୍ତିକେତୁ ଦ୍ୱିତୀୟାୟାଂ ଶୁକ୍ଳାୟାଂ ଭ୍ରାତୃପୂଜନଂ ।
ଯାନକୁର୍ଯ୍ୟା ଦ୍ୱିନଶ୍ୟନ୍ତି ଭ୍ରାତରଃ ସପ୍ତଜନ୍ମନ ।

ଲିଙ୍ଗପୁରାଣଂ

କାର୍ତ୍ତିକ ମାସର ଶୁକ୍ଳପକ୍ଷୀୟ ଦ୍ୱିତୀୟାକୁ ଭ୍ରାତୃ ଦ୍ୱିତୀୟାକହନ୍ତି ସେହି ଦିବସରେ ଭଗିନୀଗଣ ଭ୍ରାତୃ ପୂଜାକରିବେ । ନକଲେ ସପ୍ତଜନ୍ମ ପର୍ଯ୍ୟନ୍ତ ତାଙ୍କର ଭ୍ରାତା ଜୀବିତହେବେନାହିଁ ।

ତଥାଚ ମହା ଭାରତେ

କାର୍ତ୍ତିକେ ଶୁକ୍ଳପକ୍ଷେତୁ ଦ୍ୱିତୀୟାୟାଂ ଯୁଧିଷ୍ଠିର ।
ଯମୋ ଯମୁନୟା ପୂର୍ବଂ ଭୋଜିତଃ ସ୍ୱଗୃହେ ସ୍ୱୟଂ
ତସ୍ମା ନ୍ନିଜଗୃହେପାର୍ଥ ନଭୋକ୍ତବ୍ୟ ମତୋବୁଧୈଃ ।
ଯତ୍ନେନ ଭଗିନୀ ହସ୍ତା ଭୋକ୍ତବ୍ୟଂ ପୁଷ୍ଟିବର୍ଦ୍ଧନଂ ।
ଦାନାନିଚ ପ୍ରଦେୟାନି ଭଗିନୀଭ୍ୟୋ ବିଶେଷତଃ

ହେ ଯୁଧିଷ୍ଠିର କାର୍ତ୍ତିକର ଶୁକ୍ଳା ଦ୍ୱିତୀୟାରେ ଯମ ଓ ଯମୁନାଙ୍କର ପୂଜା କରିବାକୁ ହୁଏ । ହେ ପାର୍ଥ ପଣ୍ଡିତମାନେ ସେହିଦିନ ସ୍ୱଗୃହେ ଭୋଜନକରିବାକୁ ନିଷିଦ୍ଧ କରି ସଯତ୍ନେ ଭଗିନୀହସ୍ତେ

ଭୋଜନ କରିବାକୁ କହିଅଛନ୍ତି । ଏବଂ ସେହିଦିନ ଭଗିନୀର ଦାନ ପ୍ରତିଗ୍ରହ ଓ ଭଗିନୀକୁ ଦାନ କରିବ ।

ଭ୍ରାତସ୍ତବାନୁଜାତାହଂ ଭୁଙ୍କ୍ଷ୍ୱ ଭକ୍ତମିଦଂ ଶୁଭଂ ।
ପ୍ରୀତୟେ ଯମରାଜସ୍ୟ ଯମୁନାୟା ବିଶେଷତଃ ।

ଭଗିନୀ ଉକ୍ତ ମନ୍ତ୍ର ପଢି ଭ୍ରାତାର ହସ୍ତେ ଅନ୍ନପ୍ରଦାନ କରିବେ, ଯଦି ଭଗିନୀ ବଡ଼ ହୋଇଥାନ୍ତି ତେବେ ( ଭ୍ରାତସ୍ତବାଗ୍ରଜାତାହଂ ) ଏହି ରୂପ କହିବେ ।

ପଞ୍ଚମେଚ ତଥାଭାଗେ ସଂବିଭାଗୋ ଯଥାର୍ହିତଃ ।
ଦେବପିତୃ ମନୁଷ୍ୟାଣାଂ କୀଟାନାଞ୍ଚୋପଦିଶ୍ୟତେ ।
ସଂବିଭାଗଂ ତତଃ କୃତ୍ୱା ଗୃହସ୍ଥଃ ଶେଷଭୁଗ୍ଭବେତ୍
ଇତି ଦକ୍ଷଃ

ଭଗିନୀ ଗୃହେ ଭୋଜନ କାଳେ ଦକ୍ଷପ୍ରଜାପତି ଏହି ରୂପ ନିର୍ଦ୍ଦେଶ କରିଅଛନ୍ତି ଯେ ଦିବସକୁ ଅଷ୍ଟମଭାଗରେ ବିଭକ୍ତକଲେ ପ୍ରତ୍ୟେକ ଭାଗକୁ ଏକ ୨ ଯାମାର୍ଦ୍ଧ କହେ । ଏହିରୂପ ପଞ୍ଚମ ଯାମାର୍ଦ୍ଧ ସମୟେ ଭ୍ରାତାଙ୍କୁ ଭୋଜନକରାଇ ପରେ ଗୃହସ୍ଥ ସକଳ ଭୋଜନ କରିବେ । ଆଉ ଅପର ପକ୍ଷର ପର ଶୁକ୍ଳ ଦ୍ୱିତୀୟା କୋଜାଗରର ପର କୃଷ୍ଣଦ୍ୱି- ତୀୟା ଚୈତ୍ର ପୌର୍ଣ୍ଣମାସୀର ପର ଓ କାର୍ତ୍ତିକପୌର୍ଣ୍ଣମାସୀର ପର କୃଷ୍ଣ ଦ୍ୱିତୀୟା ଏମାନେ ଭ୍ରାତୃଦ୍ୱିତୀୟାର ସହିତ ସ୍ପୃଗ୍ୟାଦର, ସୁତରାଂ ଏହି ଦିବସେ ଅନଧ୍ୟାୟ ।

ପ୍ରମାଣଂ ବୃଦ୍ଧମାର୍କଣ୍ଡେ

ପ୍ରେତକୋଜାଗରୈର୍ବା ଦ୍ୱିତୀୟାସ୍ତାଃ ପ୍ରେତପକ୍ଷଗତେର୍ଯ୍ୟା
ଯାତୁ କୋଜାଗରେ ଯାତୁ ଚୈତ୍ରୀ ବାନ୍ୟାଃ ପରେଽପିଚ ।

ତ୍ରିମୂର୍ତ୍ତିବ୍ୟସମାପ୍ତେଷ ଦ୍ୱିତୀୟା ଯା ଭବେତ୍ତିଥିଃ
ସର୍ବା ସ୍ନେହା ସ୍ମୃତ ଧାସ୍ୟଃ ପୌରାଣୈଃ ପରକୀର୍ତ୍ତିତାଃ ।

ଯମ ଦ୍ୱିତୀୟା ଅର୍ଥାତ୍ ଭାତୃ ଦ୍ୱିତୀୟାରେ ଯାହାଙ୍କଲେ ନଷ୍ଟସ୍ମୃ ମୃତ୍ୟୁଏ ।

ତଥା ଯମଦ୍ୱିତୀୟାୟାଂ ଯାତ୍ରାୟାଂ ମରଣଂ ଭବେତ୍
ଇତି ଜ୍ୟୋତିଷଃ

---

ଅଥ ତୃତୀୟା

ରମ୍ଭାଖ୍ୟାଂ ବର୍ଜୟିତ୍ୱାତୁ ତୃତୀୟାଂ ମୁନିସତ୍ତମ ।
ଅନ୍ୟେଷୁ ସର୍ବକାର୍ଯ୍ୟେଷୁ ଗଣଯୁକ୍ତା ପ୍ରଶସ୍ୟତେ
ଇତି ବ୍ରହ୍ମବୈବର୍ତ୍ତ ପୁରାଣେ

ରମ୍ଭାବ୍ରତ ଭିନ୍ନ ଦୈବ ଓ ପୈତ୍ର କର୍ମରେ ଚତୁର୍ଥୀଯୁକ୍ତା ତୃତୀୟା ଗ୍ରାହ୍ୟ ।

ଭଦ୍ରେ କୁରୁଷ୍ୱଯତ୍ନେନ ରମ୍ଭାଖ୍ୟଂ ବ୍ରତମୁତ୍ତମଂ ।
ଜ୍ୟୈଷ୍ଠ ଶୁକ୍ଳ ତୃତୀୟାୟାଂ ସ୍ନାତ୍ୱା ନିୟମତତ୍ପର ।
ଇତି ଭବିଷ୍ୟୋତ୍ତର ଖଣ୍ଡେ

ହେ ଭଦ୍ରେ ! ରମ୍ଭାବ୍ରତ ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷୀୟ ତୃତୀୟାରେ ଶୁଚହୋଇ କରିବ ।

ବୈଶାଖେ ମାସିରାଜେନ୍ଦ୍ର ଶୁକ୍ଳପକ୍ଷେ ତୃତୀୟିକା
ଅକ୍ଷୟା ସାତଥିଃ ପ୍ରୋକ୍ତା କୃତ୍ତିକା ରୋହିଣୀଯୁତା
ତସ୍ୟାଂ ଦାନାଦିକଂ ପୁଣ୍ୟ ମକ୍ଷୟଂ ସମୁଦାହୃତଂ ।
ଇତି ଭବିଷ୍ୟୋତ୍ତରଖଣ୍ଡେ

ବୈଶାଖମାସର୍ ଶୁକ୍ଳପକ୍ଷୀୟ ଏବ କୃତ୍ତିକା ଓ ରୋହିଣୀଯୁକ୍ତା ଯେ ତୃତୀୟା ତାର୍ ନାମ ଅକ୍ଷୟତୃତୀୟା । ସେହିଦିନ ସ୍ନାନ ଓ ଦାନାଦି କଲେ ତାରଫଳ ଅକ୍ଷୟହୁଏ ଏବ ସେହିଦିନ ଜଳଦାନ ମହାପୁଣ୍ୟ ଏବ ସେହିଦିନ ବିଷ୍ଣୁଙ୍କୁ ଚନ୍ଦନ ଚର୍ଚ୍ଚିତ ଓ ତାହାଙ୍କୁ ଚନ୍ଦନାକ୍ତ ଦେଖିଲେ ବିଷ୍ଣୁଲୋକ ବାସହୁଏ ।

ଅନ୍ୟଚ ବ୍ରହ୍ମପୁରାଣେ

ବୈଶାଖେ ଶୁକ୍ଳପକ୍ଷେତୁ ତୃତୀୟାୟାଂ ଜନାର୍ଦ୍ଦନଃ ।
ଯବାନୁତ୍ପାଦୟାମାସ ଯୁଗଞ୍ଚାରବ୍ଧବାନ୍ କୃତଂ ॥
ବ୍ରହ୍ମଲୋକାତ୍ତ୍ରିପଥଗାଂ ପୃଥିବ୍ୟାମବ ତାରୟେତ୍,
ତସ୍ୟାଂକାର୍ଯ୍ୟୋ ଯବୈର୍ହୋମୋ ଯବୈର୍ବିଷ୍ଣୁଂ ସମର୍ଚ୍ଚୟେତ୍ ॥
ଯବାନ୍ଦଦ୍ୟାଦ୍ଦ୍ୱିଜାତିଭ୍ୟଃ ପ୍ରୟତଃ ପ୍ରାଶୟେଦ୍ୟବାନ୍ ।
ପୂଜୟେଚ୍ଛଙ୍କରଂ ଗଙ୍ଗାଂ କୈଳାସଞ୍ଚ ହିମାଳୟଂ ।
ଭଗୀରଥଞ୍ଚ ନୃପତିଂ ସାଗରାଣାଂ ସୁଖାବହଂ ।
ସ୍ନାନଂ ଦାନଂ ତପଃ ଶ୍ରାଦ୍ଧଂ ଜପହୋମାଦିକଞ୍ଚ ଯତ୍ ।
ଶ୍ରଦ୍ଧୟା କ୍ରିୟତେ ତସ୍ୟ ତଦାନନ୍ତ୍ୟାୟ କଳ୍ପତେ ॥

ବୈଶାଖ ଶୁକ୍ଳପକ୍ଷ ତୃତୀୟାରେ ଭଗବାନ୍ ଯବ ସୃଷ୍ଟି କରି ସତ୍ୟଯୁଗର ସୃଷ୍ଟି କରିଥିଲେ ଏଥିନିମିତ୍ତ ସେହିଯବଦ୍ୱାରା ବିଷ୍ଣୁଙ୍କର ଅର୍ଚ୍ଚନା ଯବହୋମ ଓ ଯବାନ୍ନ ବ୍ରାହ୍ମଣଙ୍କୁ ଭକ୍ଷଣକରାଇବ । ଆଉ ସେହି ତିଥିରେ ଗଙ୍ଗା ବ୍ରହ୍ମଲୋକରୁ ପୃଥିବୀକୁ ଅବତରଣ କରିଥିଲେ ଏଥିନିମିତ୍ତ ଶଙ୍କର ଗଙ୍ଗା ହିମାଳୟ, କୈଳାସ, ସଗର ନୃପତିଙ୍କ ପୂଜାକରିବ ସେହିଦିନ ଯଦି ଶ୍ରଦ୍ଧାଯୁକ୍ତ ହୋଇ ଗଙ୍ଗା ସ୍ନାନ ଓ ଜପହୋମାଦିକରିବ ତେବେ ଅନନ୍ତ କାଳ ସ୍ୱର୍ଗବାସ ହୁଏ

ପରନ୍ତୁ ଅକ୍ଷୟ୍ତୃତୀୟାରେ ସ୍ତ୍ରୀଗ୍ନାଦିରନାଦ୍ଧି ପ୍ରମାଣ ପୂର୍ବେ ଉକ୍ତ ହୋଇ ଅଛି ।

---

ଚତୁର୍ଥୀ

ଏକାଦଶ୍ୟଷ୍ଟମୀ ଷଷ୍ଠୀ ଅମାବାସ୍ୟା ଚତୁର୍ଥିକା ।
ଉପୋଷ୍ୟାଃ ପରସଂଯୁକ୍ତା ପରାଃ ପୂର୍ବେଣସଂଯୁତାଃ ।
ଇତି ଅଗ୍ନି ପୁରାଣଂ

ଏକାଦଶୀ, ଅଷ୍ଟମୀ, ଷଷ୍ଠୀ, ଅମାବାସ୍ୟା, ଓ ଚତୁର୍ଥୀ ଏମାନେ ଉପବାସ ବିଷୟରେ ପରସଂଯୁକ୍ତା ଗ୍ରାହ୍ୟା, ଏତଭିନ୍ନ ତିଥିପୂର୍ବ ସଂଯୁକ୍ତା ଗ୍ରାହ୍ୟା ଏସ୍ଥଳେ ଚତୁର୍ଥୀ ପଞ୍ଚମୀ ସଂଯୁକ୍ତା ଗ୍ରାହ୍ୟା, କିନ୍ତୁ ବ୍ରହ୍ମବୈବର୍ତ୍ତ ପୁରାଣାନ୍ତର୍ଗତ ଗଣେଶବ୍ରତରେ ତୃତୀୟାଯୁକ୍ତା ଚତୁର୍ଥୀ ଗ୍ରାହ୍ୟା ପ୍ରମାଣଂ

ଚତୁର୍ଥୀ ସଂଯୁତାକାର୍ଯ୍ୟା ତୃତୀୟାତ ଚତୁର୍ଥିକା ।
ତୃତୀୟୟା ଯୁତାନୈବ ପଞ୍ଚମ୍ୟାକାରୟେତ୍ କ୍ୱଚିତ୍ ॥
ଇତି ବ୍ରହ୍ମବୈବର୍ତ୍ତ ବଚନଂ

ଅମାବୈ ସୋମବାରେଣ ରବିବାରେଣ ସପ୍ତମୀ ।
ଚତୁର୍ଥୀ ଭୌମବାରେଣ ଅକ୍ଷୟ୍ୟା ଦପି ଗ୍ରକ୍ଷୟା ॥
ଭବିଷ୍ୟ ପୁରାଣଂ

ସୋମବାର ଅମାବସ୍ୟା ରବିବାର ସପ୍ତମୀ ଓ ମଙ୍ଗଳବାର ଚତୁର୍ଥୀହେଲେ ଅକ୍ଷୟ୍ୟାରୁ ଅକ୍ଷୟ୍ୟା ଅର୍ଥାତ୍ ଏଥିରେ ସ୍ନାନ ଦାନାଦିକଲେ ଅକ୍ଷୟ୍ୟା ତିଥିର ସ୍ନାନାଦିର ଫଳଠାରୁ ଅଧିକ ଫଳହୁଏ ।

ତ୍ରୟୋଦଶ୍ୟା ଶ୍ଚତୁର୍ଥ୍ୟାଶ୍ଚ ସପ୍ତମ୍ୟା ଦ୍ୱାଦଶୀତିଥେଃ ।

ପ୍ରଦୋଷେ ଽଧ୍ୟୟନଂ ଧୀମାନ୍ ନ କୁର୍ବ୍ବୀତ ଯଥା ଦିନଂ ।

ଇତି ସ୍ମୃତିଃ

ତ୍ରୟୋଦଶୀ, ଚତୁର୍ଥୀ, ସପ୍ତମୀ, ଦ୍ୱାଦଶୀ ଏହି କେତୋଟି ତିଥିରେ ପ୍ରଦୋଷ ଅଧ୍ୟୟନ କରିବ ନାହିଁ, ପ୍ରଦୋଷ ଶବ୍ଦାର୍ଥ ପ୍ରଥମପ୍ରହର ଏହା ହେମାଦ୍ରି କହି ଅଛନ୍ତି ।

ପଞ୍ଚାନନଗତେଭାନୌ ପକ୍ଷୟୋରୁଭୟୋରପି ।
ଚତୁର୍ଥ୍ୟା ମୁଦିତଶ୍ଚନ୍ଦ୍ରୋ ନେକ୍ଷିତବ୍ୟଃ କଦାଚନ ॥

ଭାଦ୍ରବ ମାସର କୃଷ୍ଣ ଓ ଶୁକ୍ଳ ଉଭୟ ପକ୍ଷର ଚତୁର୍ଥୀ ଚନ୍ଦ୍ରକୁ ନଷ୍ଟ ଚନ୍ଦ୍ର କୁହାଯାଏ ଏଥିନିମନ୍ତେ କେହି ତାହାକୁ ଦର୍ଶନ କରିବ ନାହିଁ । ଆଉ ମାଘ ମାସର ଶୁକ୍ଳପକ୍ଷୀୟ ଚତୁର୍ଥୀରେ ଗୌରୀ ପୂଜା କରିବାକୁ ହିଏ ତାହାର ପ୍ରମାଣ ଅନ୍ୟସ୍ଥାନରେ ଲେଖା ହେବ ।

---

ପଞ୍ଚମୀ

ସାଚତୁର୍ଥୀ ଯୁତାଗ୍ରାହ୍ୟା ଯୁକ୍ତ ପଞ୍ଚମୀ ଚ ପ୍ରବର୍ତ୍ତିବ୍ୟା ଚତୁର୍ଥୀ ସହିତା ଭବେ ।

ଇତି ସ୍କନ୍ଦପୁରାଣଂ ।

ଯେଽଞ୍ଚମୀ ଚତୁର୍ଥୀ ଏବଂ ଚତୁର୍ଥୀର ଚନ୍ଦ୍ରଯୁକ୍ତା ସେହିପଞ୍ଚମୀ ଗ୍ରାହ୍ୟ ପରଯୁକ୍ତା ଗ୍ରାହ୍ୟନୁହେ ପ୍ରମାଣଂ କାଲମାଧବୀୟେ ।
ଚତୁର୍ଥୀ ସଂଯୁତା କାର୍ଯ୍ୟା ପଞ୍ଚମୀ ପରୟା ନତୁ ।

ହାରିତ ବଚନଂ ।

ପଞ୍ଚମୀର ସମସ୍ତ କାର୍ଯ୍ୟ ଚତୁର୍ଥୀ ସଂଯୁକ୍ତାରେ କରିବ, ପଞ୍ଚ-

ଯୁକ୍ତା ଗ୍ରାହ୍ୟ ନୁହେ, ।

ସୁପ୍ତେ ଜନାର୍ଦ୍ଦନେ କୃଷ୍ଣେ ପଞ୍ଚମ୍ୟାଂ ଭବନାଙ୍ଗନେ,
ପୂଜୟେନ୍ମନସାଦେବୀଂ ସ୍ନୁହୀ ବିଟପସଂସ୍ଥିତାଂ ।
ଇତି ଦେବୀ ପୁରାଣଂ ।

ଆଷାଢ଼ମାସର କୃଷ୍ଣାପଞ୍ଚମୀକୁ ନାଗପଞ୍ଚମୀ କୁହାଯାଏ ସେହି ଦିନ ପ୍ରାଙ୍ଗଣେ ମନସାବୃକ୍ଷରେ ମନସାଦେବୀ ପୂଜା ଓ ଅଷ୍ଟନାଗଙ୍କର ପୂଜା କରିବାକୁ ହୁଏ । ଏହିରୂପ ପ୍ରତି ପଞ୍ଚମୀ ଅର୍ଥାତ୍ ଭାଦ୍ରବମାସର କୃଷ୍ଣପଞ୍ଚମୀ ପର୍ଯ୍ୟନ୍ତ ପୂଜା କରି କରିବ ତାହାହେଲେ ସର୍ପଭୟ ହୁଏ ନାହିଁ ।

---

ଭବିଷ୍ୟୋତ୍ତରେ ମାଘ ଶୁକ୍ଲପକ୍ଷମଧିକୃତ୍ୟ

ଚତୁର୍ଥୀ ବରଦା ନାମ ତସ୍ୟାଂ ଗୌରୀ ପ୍ରପୂଜିତା ।
ସୌଭାଗ୍ୟମତୁଲଂ କୁର୍ଯ୍ୟାତ୍ ପଞ୍ଚମ୍ୟା ଶ୍ରୀ ରପିସ୍ତ୍ରିୟଂ ॥
ପଞ୍ଚମ୍ୟାଂ ପୂଜୟେଲ୍ଲକ୍ଷ୍ମୀଂ ପୁଷ୍ପ ଧୂପାନ୍ନବାରିଭିଃ ।
ମସ୍ୟାଧାରଂ ଲେଖନୀଞ୍ଚ ପୂଜୟେନ୍ନଲିଖେ ତ୍ତତଃ ॥
ଇତି ସମ୍ବତ୍ସର ପ୍ରଦୀପେ ।

ମାଘମାସର ଶୁକ୍ଳପକ୍ଷୀୟ ଚତୁର୍ଥୀକୁ ବରଦା ଚତୁର୍ଥୀ କହନ୍ତି ସେହି ଦିନ ଗୌରୀ ପୂଜା କରିବାକୁ ହୁଏ, ଆଉ ପଞ୍ଚମୀରେ ଲକ୍ଷ୍ମୀ ଓ ସରସ୍ୱତୀ ଏକତ୍ରେ ପୂଜାକରି ମସ୍ୟାଧାର ଓ ଲେଖନୀ ପୂଜା କରିବ । ସେହି ଦିନ ଅଧ୍ୟୟନ ବା ଲେଖିବ ନାହିଁ ଏବଂ ସେହି ଦିନ ସରସ୍ୱତୀଙ୍କର ଉତ୍ସବ କରିବାକୁ ହେବ ।

---

ଷଷ୍ଠୀ

ସାଚ ସପ୍ତମୀଯୁତା ଗ୍ରାହ୍ୟା

ଇତି ସ୍ମାର୍ତ୍ତଃ ।

ସପ୍ତମୀ ଯୁତା ଷଷ୍ଠୀ ଗ୍ରାହ୍ୟା;

ଜ୍ୟୈଷ୍ଠେ ମାସି ସିତେ ପକ୍ଷେ ଷଷ୍ଠୀ ତ୍ୱରଣ୍ୟ ସଞ୍ଜ୍ଞିକା
ବ୍ୟଜନୈକକରଗ୍ରସ୍ତସ୍ୟା ଜଟନ୍ତି ବିପିନେ ସ୍ତ୍ରିୟଃ ॥

ଇତି ଗୃଢ ମାର୍ତ୍ତଣ୍ଡେ

ଜ୍ୟେଷ୍ଠ ମାସର ଶୁକ୍ଳ ଷଷ୍ଠୀକୁ ଅରଣ୍ୟ ଷଷ୍ଠୀବୋଲନ୍ତି । ଏନିମିତ୍ତ ଉକ୍ତ ଷଷ୍ଠୀରେ ସ୍ତ୍ରୀଲୋକମାନେ ଏକ ଏକ ବିଞ୍ଚଣା ହସ୍ତରେ ଧରି ଅରଣ୍ୟରେ ଷଷ୍ଠୀ ପୂଜାକରିବେ ଏହାକୁ ଯାମାତା ଷଷ୍ଠୀ କହନ୍ତି, ।

ଯେୟଂ ଭାଦ୍ରପଦେ ଶୁକ୍ଳା ଷଷ୍ଠୀ ଭରତସତ୍ତମ ।
ସ୍ନାନ ଦାନାଦିଙ୍କ ତସ୍ୟ ସର୍ବଂ ମକ୍ଷୟ୍ୟ ମୁଚ୍ୟତେ ।

ଭବିଷ୍ୟୋତ୍ତରଖଣ୍ଡେ

ଯେୟଂ ମାର୍ଗଶିରେ ମାସି ଷଷ୍ଠୀ ଭରତ ସତ୍ତମ ।
ପୁଣ୍ୟା ପାପହରା ଧନ୍ୟା ଶିବା ଶାନ୍ତା ଗୁହପ୍ରିୟା ।

ଭବିଷ୍ୟ ପୁରାଣଂ ।

ଷଷ୍ଠ୍ୟାଂ ସ୍କନ୍ଦସ୍ୟ କର୍ତ୍ତବ୍ୟା ପୂଜା ସର୍ବୋପକାରିକା ।
ଇହୈବ ସୁଖ ସୌଭାଗ୍ୟ ମନ୍ତେ ବିଷ୍ଣୁପୁରଂ ବ୍ରଜେତ୍ ।

ଇତି ଦେବୀପୁରାଣଂ ।

ଭାଦ୍ରବମାସ ଶୁକ୍ଳା ଷଷ୍ଠୀକୁ ଅକ୍ଷୟା ଷଷ୍ଠୀ କୁହାଯାଏ ସ୍ନାନାଦି

କରିଲେ ଅକ୍ଷୟ ହୁଏ । ଅଗ୍ରହାୟଣ ମାସର ଶୁକ୍ଳା ଷଷ୍ଠୀକୁ ଗୁହଷଷ୍ଠୀ କହନ୍ତି, ସେଥିରେ ଶିବାର ଶାନ୍ତ କରିବାକୁ ହୁଏ । ଚୈତ୍ର ମାସର ଶୁକ୍ଳ ଷଷ୍ଠୀକୁ ସ୍କନ୍ଦ ଷଷ୍ଠୀ କହନ୍ତି ସେଥିରେ କାର୍ତ୍ତିକେୟ ପୂଜାକଲେ ଇହ କାଳରେ ସୁଖ ସୌଭାଗ୍ୟ ଓ ପରକାଳରେ ବୈକୁଣ୍ଠ ପ୍ରାପ୍ତ ହୁଏ । ଆଉ ଅଶ୍ୱିନ ମାସର ଶୁକ୍ଳା ଷଷ୍ଠୀକୁ ବୋଧନ ଷଷ୍ଠୀ କହନ୍ତି;

କୃଷ୍ଣାଷ୍ଟମୀ ସ୍କନ୍ଦଷଷ୍ଠୀ · ଶିବରାତ୍ରୀ ଚତୁର୍ଦ୍ଦଶୀ ।
ଏତାଃ ପୂର୍ବଯୁତାଃ କାର୍ଯ୍ୟା ତିଥ୍ୟନ୍ତେ ପାରଣଂ ଭବେତ୍
ଇତି ବ୍ରହ୍ମବୈବର୍ତ୍ତ ବଚନାତ୍

କୃଷ୍ଣାଷ୍ଟମୀ ଅର୍ଥାତ୍ ଜନ୍ମାଷ୍ଟମୀ, ସ୍କନ୍ଦଷଷ୍ଠୀ, ଶିବରାତ୍ରୀ, ଏମାନେ ପରଯୁତା ଗ୍ରାହ୍ୟା ତିଥ୍ୟନ୍ତେ ପାରଣାକରିବ ।

## ସପ୍ତମୀ

---

ସାଚ ଷଷ୍ଠୀଯୁତା ଗ୍ରାହ୍ୟା ଯୁଗ୍ମାତ୍,

ଷଷ୍ଠୀ ଯୁକ୍ତା ସପ୍ତମୀ ଯୁଗ୍ମାଦର ହେତୁ ଗ୍ରାହ୍ୟା ।

ପଞ୍ଚମୀ ସପ୍ତମୀ ଚୈବ ଦଶମୀଚ ତ୍ରୟୋଦଶୀ
ପ୍ରତିପନ୍ନବମୀଚୈବ କର୍ତ୍ତବ୍ୟାସମ୍ମୁଖୀ ତିଥିଃ ।
ଇତି ପୈଠୀନସୀ ବଚନଂ

ପଞ୍ଚମୀ ସପ୍ତମୀ ଦଶମୀ ତ୍ରୟୋଦଶୀ ପ୍ରତିପଦ୍ ଓ ନବମୀ ଏମାନେ ଉପବାସବ୍ରତରେ ସାମ୍ମୁଖୀ ଅର୍ଥାତ୍ ନିସନ୍ଧ୍ୟା ବ୍ୟାପିନୀ ପରଯୁକ୍ତା ଗ୍ରାହ୍ୟହୁଏ ।

ଷଷ୍ଠୀସମେତାକର୍ତ୍ତବ୍ୟା ସପ୍ତମୀ ନାଷ୍ଟମୀ ଯୁତା
ଇତିଭବିଷ୍ୟପୁରାଣଂ

ଉପବାସ ବିଧିରେ ଷଷ୍ଠୀଯୁତା ସପ୍ତମୀରେ ଉପବାସକରିବ ଅଷ୍ଟମୀଯୁକ୍ତା ହେଲେ ହେବନାହିଁ ।

ଷଷ୍ଠୀଯୁତାସପ୍ତମୀଚ କର୍ତ୍ତବ୍ୟା ତାତସର୍ବଦା ।
ଷଷ୍ଠୀଚ ସପ୍ତମୀଯତ୍ର ତତ୍ରସନ୍ନିହିତୋରବିଃ ॥
ଶୁକ୍ଳପକ୍ଷସ୍ୟ ସପ୍ତମ୍ୟା ସୂର୍ଯ୍ୟବାରେ ଯଦାଭବେତ୍ ।
ସପ୍ତମୀ ବିଜୟାନାମ ତତ୍ରଦତ୍ତଂ ମହାଫଳଂ ॥
ସ୍କନ୍ଦପୁରାଣଂ

ଯଦି ଶୁକ୍ଳପକ୍ଷୀୟ ସପ୍ତମୀରେ ରବିବାରହୁଏ ତେବେତାହାରନାମ ବିଜୟା ସପ୍ତମୀ ସେଥିରେ ସ୍ନାନଦାନ ଓ ସୂର୍ଯ୍ୟପୂଜାକଲେ ମହାଫଳ ହୁଏ ।

ଭାଦ୍ରେମାସି ସିତେପକ୍ଷେ ସପ୍ତମ୍ୟାଂ କଥ୍ୟତେ ନୟା
ସ୍ନାତ୍ୱାଶିବଂ ଲେଖୟିତ୍ୱା ମଣ୍ଡଳେତୁ ସହାମ୍ବିକାଂ ।
ପୂଜୟେତ୍ତଚ ତଦା ତସ୍ୟା ଦୂଷ୍ପ୍ରାପ୍ୟଂ ନୈବ ବିଦ୍ୟତେ ।
ଇତି ଭବିଷ୍ୟ ପୁରାଣଂ

ଇତଂ କୁକ୍କୁଟୀ ବ୍ରତଂ

ଭାଦ୍ରବ ମାସର ଶୁକ୍ଳାସପ୍ତମୀରେ ମଣ୍ଡଳ ମଧ୍ୟରେ ଶିବ ଦୁର୍ଗା ଲେଖି ଯେ କଥିତ ଯୁକ୍ତା ହୋଇ ଉକ୍ତ ଦେବ ଦେବୀଙ୍କର ପୂଜା କରନ୍ତି ସେମାନଙ୍କର ପରଜନ୍ମେ ପୃଥିବୀରେ କିଛି ଦୁଷ୍ପ୍ରାପ୍ୟ ରହେ ନାହିଁ ଇହାର ନାମ କୁକ୍କୁଟୀବ୍ରତ ଏହାକୁ ମଧ୍ୟ ଲଳିତା ସପ୍ତମୀ କୁହାଯାଏ ।

ସୂର୍ଯ୍ୟ ଗ୍ରହଣ ତୁଲ୍ୟାହି ଶୁକ୍ଳା ମାଘସ୍ୟ ସପ୍ତମୀ ।

ଅରୁଣୋଦୟବେଲାୟାଂ ତସ୍ୟାଂ ସ୍ନାନଂ ମହାଫଳଂ ॥
ମାଘେମାସି ସିତେ ପକ୍ଷେ ସପ୍ତମୀ କୋଟି ଭାସ୍କର୍ ।
ଦଦ୍ୟାତ୍‌ସୂର୍ଯ୍ୟାର୍ଘ୍ୟ ଦାନାଭ୍ୟମାୟୁରାରୋଗ୍ୟ ସମ୍ପଦଃ ॥
ଅରୁଣୋଦୟ ବେଲାୟାଂ ଶୁକ୍ଲାମାଘସ୍ୟ ସପ୍ତମୀ ।
ଗଙ୍ଗାୟାଂ ଯଦ୍‌ଲଭ୍ୟେତ ସୂର୍ଯ୍ୟଗ୍ରହଣଶତୈଃସମା ॥

ଇତି ଭବିଷ୍ୟ ପୁରାଣଂ

ମାଘ ମାସରେ ଶୁକ୍ଲା ସପ୍ତମୀକୁ ମାକରୀ ସପ୍ତମୀ କହନ୍ତି ଏବଂ ତାହାକୁ ଯୁଗାଦ୍ୟା ମଧ୍ୟ କୁହାଯାଏ ସେହିଦିନ ଅରୁଣୋଦୟ କାଳରେ ଯଦି ଗଙ୍ଗାସ୍ନାନ କରାଯାଏ ତେବେ ଶତସୂର୍ଯ୍ୟ ଗ୍ରହଣ କାଳୀନ ଗଙ୍ଗାସ୍ନାନର ଫଳ ମିଳେ । ଆଉ ଦାନାଦି କଲେ ବହୁସମ୍ପଦ ଯୁକ୍ତହୁଏ । ଆଉ ମନ୍ୱନ୍ତର ବିଷୟେ ପ୍ରମାଣ ପରେ ଉକ୍ତ ହେବ ।

ସ୍ନାନ ପରିପାଟୀ ମାହ, କୃତ୍ୟ କଳ୍ପତରୁ ଲତାୟାଂ ଦ୍ରଷ୍ଟୁଃ ସାତୋଟି ବଦରୀପତ୍ର ଓ ସାତୋଟି ଅର୍କପତ୍ର ମସ୍ତକେ ଧାରଣ କରି ଏହି ମନ୍ତ୍ର ପାଠ କରିବ ଯଥା ;

ଯଦ୍ୟଜ୍ଜନ୍ମ କୃତଂ ପାପଂ ମୟା ସପ୍ତ ସୁଜନ୍ମସୁ ।
ତନ୍ମେରୋଗଞ୍ଚ ଶୋକଞ୍ଚ ମାକରୀ ହନ୍ତୁ ସପ୍ତମୀ ॥
ମହା ନବମ୍ୟାଂ ଦ୍ୱାଦଶ୍ୟାଂ ଭରଣ୍ୟାମପିଚୈ ବହି ।
ତଥାକ୍ଷୟ ତୃତୀୟାୟାଂ ଶିଷ୍ୟାନ୍ନାଧ୍ୟାପୟେଦ୍ବୁଧଃ ॥
ମାଘମାସେ ତୁ ସପ୍ତମ୍ୟାଂ ରଥାଖ୍ୟାୟାଂ ଚ ବର୍ଜୟେତ୍ ।

ଇତି ମତ୍ସ୍ୟପୁରାଣଂ ।

ମହାନବମୀ ଦ୍ୱାଦଶୀ ଭରଣି ନକ୍ଷତ୍ର ଯୁକ୍ତଦିବସରେ ଅକ୍ଷୟା

ତୃତୀୟା ଏବ ରଥାଖ୍ୟା ସପ୍ତମୀ ( ମାଘମାସସ୍ୟ ସପ୍ତମ୍ୟାଂ ତସ୍ମାତ୍ ସାରଥ ସପ୍ତମୀ ) ଅର୍ଥାତ୍ ମାଘମାସର ସପ୍ତମୀରେ ପଣ୍ଡିତଗଣ ଶିଷ୍ୟମାନଙ୍କୁ ଅଧ୍ୟୟନ କରାଇବେ ନାହିଁ ।

ଅଥ ମନ୍ୱନ୍ତର

ଅଶ୍ୱୟୁକ୍ ଶୁକ୍ଳ ନବମୀ ଦ୍ୱାଦଶୀ କାର୍ତ୍ତିକୀ ତଥା ।
ତୃତୀୟା ଚୈତ୍ରମାସସ୍ୟ ତଥା ଭାଦ୍ରପଦସ୍ୟଚ ॥
ଫାଲ୍ଗୁନସ୍ୟାପ୍ୟମାବାସ୍ୟା ପୌଷସ୍ୟୈକାଦଶୀତଥା ।
ଆଷାଢ଼ସ୍ୟାପି ଦଶମୀ ତଥା ମାଘସ୍ୟ ସପ୍ତମୀ ॥
ଶ୍ରାବଣସ୍ୟାଷ୍ଟମୀ କୃଷ୍ଣା ତଥାଷାଢ଼ସ୍ୟପୂର୍ଣ୍ଣିମା ।
କାର୍ତ୍ତିକୀ ଫାଲ୍ଗୁନୀ ଚୈତ୍ରୀ ଜ୍ୟୈଷ୍ଠୀ ପଞ୍ଚଦଶୀ ସିତା ॥
ମନ୍ୱନ୍ତରାଦୟସ୍ତ୍ୱେତା ଦତ୍ତ ସ୍ୟାକ୍ଷୟକାରକାଃ ।

ଇତି ମତ୍ସ୍ୟଭବିଷ୍ୟ ପୁରାଣୟୋଃ

ଅଶ୍ୱିନମାସର ଶୁକ୍ଳାନବମୀ କାର୍ତ୍ତିକମାସର ଦ୍ୱାଦଶୀ, ଚୈତ୍ର ଓ ଭାଦ୍ରବ ଶୁକ୍ଳାତୃତୀୟା, ପୌଷର ଶୁକ୍ଳଏକାଦଶୀ ଫାଲ୍ଗୁନର ଅମାବାସ୍ୟା ଆଷାଢ଼ର ଶୁକ୍ଳ ଦଶମୀ ମାଘର ଶୁକ୍ଳା ସପ୍ତମୀ ଶ୍ରାବଣ-ମାସର କୃଷ୍ଣାଅଷ୍ଟମୀ, ଆଷାଢ଼ରପୂର୍ଣ୍ଣିମା, ଓ କାର୍ତ୍ତିକ ଫାଲ୍ଗୁନ ଚୈତ୍ର ଜ୍ୟେଷ୍ଠ ଏମାନଙ୍କର ପୂର୍ଣ୍ଣିମାକୁ ମନ୍ୱନ୍ତର କୁହାଯାଏ । ଏଥିରେ ଦାନାଦିକଲେ ମହାଫଳ ହୁଏ ।

---

ଅଥ ଯୁଗ୍ମୀ

ଯାତ ଶୁକ୍ଳା ନବମୀ ଯୁତାଗ୍ରାହ୍ୟା, ଯୁଗ୍ମାତ୍ କୃଷ୍ଣାତ ସପ୍ତମୀ ଯୁତାଗ୍ରାହ୍ୟା ।

ଶୁକ୍ଳପକ୍ଷର ଅଷ୍ଟମୀ ଶୁକ୍ଳା ନବମୀଯୁକ୍ତା କୃଷ୍ଣପକ୍ଷର ଅଷ୍ଟମୀ

କୃଷ୍ଣାଷ୍ଟମୀଯୁକ୍ତା କେବଳ ଗ୍ରାହ୍ୟହୁଏ ।

ପ୍ରମାଣଂ

କୃଷ୍ଣପକ୍ଷେ ହ୍ୟଷ୍ଟମୀ ଚୈବ କୃଷ୍ଣପକ୍ଷେ ଚତୁର୍ଦ୍ଦଶୀ ।
ପୂର୍ବବିଦ୍ଧୈବ କର୍ତ୍ତବ୍ୟା ପରବିଦ୍ଧା ନ କୁତ୍ରଚିତ୍ ॥
ଉପବାସାଦିକାର୍ଯ୍ୟେଷୁ ଏଷଧର୍ମଃ ସନାତନଃ ।

ଇତି ନିଗମେ ।

କୃଷ୍ଣପକ୍ଷର ଅଷ୍ଟମୀ ଓ ଚତୁର୍ଦ୍ଦଶୀ ଉପବାସ ବିଧିରେ ପୂର୍ବ ବିଦ୍ଧା ଅର୍ଥାତ୍ ପୂର୍ବତିଥିଯୁକ୍ତା ଗ୍ରାହ୍ୟା । ସୁତରାଂ ଶୁକ୍ଳ ପକ୍ଷପରେ ଯୁତାଗ୍ରାହ୍ୟା ।

ଶନୈଶ୍ଚରସ୍ୟ ବାରେଣ ତଥୈବାଙ୍ଗାରକସ୍ୟଚ ।
କୃଷ୍ଣାଷ୍ଟମୀ ଚତୁର୍ଦ୍ଦଶ୍ୟୋ ପୁଣ୍ୟାତ୍ପୁଣ୍ୟତରେସ୍ମୃତେ ॥

ସ୍ମୃତିଃ ।

ଶନିବାର ଓ ମଙ୍ଗଳବାର କୃଷ୍ଣପକ୍ଷୀୟ ଅଷ୍ଟମୀ ଓ ଚତୁର୍ଦ୍ଦଶୀ ହେଲେ ଅତିଶୟ ପୁଣ୍ୟଜନକ ତିଥିହୁଏ ।

ତଥା ଜ୍ୟୋତିଷେ

ସୋମବାରେ ହ୍ୟମାବାସ୍ୟା ଆଦିତ୍ୟେହତ ସପ୍ତମୀ ।
ଚତୁର୍ଥ୍ୟଙ୍ଗାରକେ ବାରେତୁ ଅଷ୍ଟମୀଚ ବୃହସ୍ପତୌ ॥
ଅତ୍ର ଯତ୍କ୍ରିୟତେ ପାପ ମଥବାଧର୍ମସଞ୍ଚୟଃ ।
ଷଷ୍ଟୀ ବର୍ଷ ସହସ୍ରାଣି ପ୍ରତିଜନ୍ମ ତଦକ୍ଷୟଂ ॥

ସୋମବାରେ ଅମାବାସ୍ୟା, ରବିବାରେ ସପ୍ତମୀ, ମଙ୍ଗଳବାରେ ଚତୁର୍ଥୀ ଓ ବୃହସ୍ପତି ବାରେ ଅଷ୍ଟମୀ ଏଥିରେ ଯେଉଁଲୋକ ଧର୍ମ ବା ପାପକରେ ତାହାର ଷାଠିଏହଜାର ବର୍ଷ ଅକ୍ଷୟହୋଇରହେ ।

ଅଥ ଜନ୍ମାଷ୍ଟମୀ

ଅଥଭାଦ୍ରପଦେମାସି କୃଷ୍ଣାଷ୍ଟମ୍ୟାଂ କଳୌ ଯୁଗେ ।
ଅଷ୍ଟାବିଂଶତିମେଜାତଃ କୃଷ୍ଣୋଽସୌ ଦେବକୀସୁତଃ ॥

ଭାଦ୍ରପଦେ ଅର୍ଥାତ୍ ଭାଦ୍ରବମାସର କୃଷ୍ଣାଷ୍ଟମୀରେ ଦେବକୀଗର୍ଭେ ଶ୍ରୀକୃଷ୍ଣ ଜନ୍ମଗ୍ରହଣ କରିଥିଲେ । ଅଉ ଅଷ୍ଟାବିଂଶତିମେ ଅର୍ଥାତ୍ ସାବର୍ଣ୍ଣ ନାମକ ମନ୍ୱନ୍ତରୀୟ ପ୍ରଥମଯୁଗେ ।

ଅନ୍ୟଚ୍ଚ ବିଷ୍ଣୁପୁରାଣେ ମହାମାୟାଂ ପ୍ରତି ଭଗବଦ୍ବାକ୍ୟଂ

ପ୍ରାବୃଟ୍କାଲେଚନଭସି କୃଷ୍ଣାଷ୍ଟମ୍ୟାମହଂ ନିଶି ।
ଉତ୍ପତ୍ସ୍ୟାମି ନବମ୍ୟାଞ୍ଚ ପ୍ରସୂତିଂ ତ୍ୱମବାପ୍ସ୍ୟସି ॥

ଭାଦ୍ରବମାସର କୃଷ୍ଣାଷ୍ଟମୀରେ ଆମ୍ଭେ ଜନ୍ମଗ୍ରହଣକରିବୁଁ, ତୁମ୍ଭେ ନବମୀରେ ଜନ୍ମହେବ ।

ଅନ୍ୟଚ୍ଚ

ଶ୍ରାବଣେ ବା ନଭସ୍ୟେ ବା ରୋହିଣୀ ସହିତାଷ୍ଟମୀ ।
ଯଦାକୃଷ୍ଣେ ନରୈର୍ଲବ୍ଧା ସାଜୟନ୍ତୀତି କୀର୍ତ୍ତିତା ।

ଶ୍ରାବଣରେ ହେଉ ବା ଭାଦ୍ରବରେ ହେଉ ରୋହିଣୀଯୁକ୍ତା କୃଷ୍ଣାଷ୍ଟମୀକୁ ଜୟନ୍ତୀବୋଲି । ଜୟନ୍ତୀ ଅଷ୍ଟମୀକୁ ଜନ୍ମାଷ୍ଟମୀକହନ୍ତି ।

ବିବେଚନାକରି ଦେଖିଲେ ଏସ୍ଥଳେ ଏକସନ୍ଦେହ ଉପସ୍ଥିତ ହେଉଅଛି ଅଗ୍ରଥରେଶ୍ରାବଣମାସକହୁଅଛନ୍ତି ପରେ ଭାଦ୍ରବମାସକହୁଅଛନ୍ତି ଏହାର ତାତ୍ପର୍ଯ୍ୟ ଏହଯେ ଶ୍ରାବଣର ମୁଖ୍ୟଚାନ୍ଦ୍ର ଓ ଭାଦ୍ରବର ଗୌଣଚାନ୍ଦ୍ର କୃଷ୍ଣ ଜନ୍ମାଷ୍ଟମୀ ଏଥିସକାଶେ ଶ୍ରାବଣ ଓ ଭାଦ୍ରବ ପ୍ରଯୁକ୍ତ ହୋଇଅଛି ଭାଦ୍ରବମାସ ଉଲ୍ଲେଖ କରିବାକୁହେବ ପରନ୍ତୁ ଭାଦ୍ରବମାସର କୃଷ୍ଣପକ୍ଷୀୟ ରୋହିଣୀଯୁକ୍ତାଷ୍ଟମୀକୁ କୃଷ୍ଣଜନ୍ମାଷ୍ଟମୀବ୍ରତ, ଏବ

ସେହି ଦିନ ଉପବାସ କରିବ ।

ଅଥ ବୁଧବାର ବ୍ୟବସ୍ଥା

ଅଷ୍ଟମୀ ରୋହିଣୀ ଯୁକ୍ତା ନିଶ୍ୟର୍ଦ୍ଧେ ଦୃଶ୍ୟତେଯଦି ।
ମୁଖ୍ୟକାଳଃ ସବିଜ୍ଞେୟଃ ସ୍ତତ୍ର ଜାତଃସ୍ୱୟଂ ହରିଃ
ଅର୍ଦ୍ଧରାତ୍ରେ ତୁ ରୋହିଣ୍ୟାଂ ଯଦାକୃଷ୍ଣାଷ୍ଟମୀ ଭବେତ୍ ।
ତସ୍ୟା ମଭ୍ୟର୍ଚ୍ଚନଂଶୌରେ ର୍ହନ୍ତି ପାପଂ ତ୍ରିଜନ୍ମଜଂ ।

ଭବିଷ୍ୟପୁରାଣ ବିଷ୍ଣୁଧର୍ମୋତ୍ତରୟୋଃ ।

ଅଷ୍ଟମୀରେ ରୋହିଣୀଯୁକ୍ତା ଅର୍ଦ୍ଧରାତ୍ରିରେ ମୁଖ୍ୟକାଳହେତୁ ସେହି ସମୟରେ ବ୍ରତକରିବ । ଆଉ କୃଷ୍ଣାଷ୍ଟମୀରେ ରୋହିଣୀ ଯୁକ୍ତାର୍ଦ୍ଧ-ରାତ୍ରିରେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଅର୍ଚ୍ଚନା କଲେ ତାହାର ଜନ୍ମାନ୍ତର ପାପ କ୍ଷୟହୁଏ । ସ୍କନ୍ଦପୁରାଣେ କହିଅଛନ୍ତି ଯେ ରାତ୍ରର ପୂର୍ବାର୍ଦ୍ଧ ବା ପରାର୍ଦ୍ଧ ଯଦି ଜୟନ୍ତୀ ଯୁକ୍ତାହୁଏ, ତେବେ ସେହିସମୟ ବ୍ରତର ପ୍ରଶସ୍ତକାଳ, ଯଦି ଅର୍ଦ୍ଧରାତ୍ରେ ରୋହିଣୀ ଯୁକ୍ତାଷ୍ଟମୀ ନହୁଏ ସୂର୍ଯ୍ୟୋ-ଦୟକାଳେ କିଞ୍ଚିତ୍ ରୋହିଣୀ ଯୁକ୍ତାଷ୍ଟମୀ ଥାଏ ଏବଂ ପରେ ସମ୍ପୂର୍ଣ୍ଣା ନବମୀହୁଏ ଏବଂ ସେହି ଦିବସସୋମବାର କିବା ବୁଧବାରହୁଏ ତେବେ ପୂର୍ବୋକ୍ତ ସକଳ କାଳ ପରିତ୍ୟାଗକରି ସେହିଦିବସ ବ୍ରତକରିବ,

ପ୍ରମାଣଂ

ଉଦୟେ ଚାଷ୍ଟମୀ କିଞ୍ଚିତ୍ ନବମୀ ସକଳା ଯଦି ।
ଭବେତ୍ତୁ ବୁଧସଂଯୁକ୍ତା ପ୍ରାଜାପତ୍ୟର୍କ୍ଷସଂଯୁତା ।
ଅପି ବର୍ଷଶତେନାପି ଲଭ୍ୟତେବାନବା ନଵେ ।

ଇତି ବ୍ରହ୍ମବୈବର୍ତ୍ତେ ।

କୌଣସି ୨ ଥର ଜନ୍ମାଷ୍ଟମୀ ଦୁଇପ୍ରକାର ହୁଏ ଅର୍ଥାତ୍ ସ୍ମାର୍ତ୍ତ

ମତରେ ଏବଂ ଗୋସ୍ୱାମୀମତରେ କିନ୍ତୁ ଏହିପରି ହୋଇଥାଏ ଇତ୍ୟାରକାରଣ ଏହିଯେ ଗୋସ୍ୱାମୀମତର କଥା ଶାସ୍ତ୍ରରେ କିଛି ନିର୍ଦ୍ଦିଷ୍ଟନାହିଁ ସେମାନେକହନ୍ତି ଯେ କୃଷ୍ଣଙ୍କର ଜନ୍ମ ପରଦିବସରେ ପ୍ରକାଶହୁଏ ଅତଏବ ଯେଉଁଦିବସ ସମସ୍ତଲୋକଜାଣିଲେ ସେହି ଦିବସ ଉପବାସ ମହୋତ୍ସବାଦି କର୍ତ୍ତବ୍ୟ । ଆଉ ସ୍ମାର୍ତ୍ତ ମତର ଯାହା ଅଭିପ୍ରାୟ ତାହାଲେଖାଗଲା ।

ଅଷ୍ଟମୀରେ ସ୍ତ୍ରୀ ପୁରୁଷ ଉଭୟଙ୍କର ଅଧିକାର ଅଛି । ଫଳତଃ ଜନ୍ମାଷ୍ଟମୀ ବ୍ରତନକଲେ ପାପଗ୍ରସ୍ତ ହୁଏ ।

ଶ୍ରାବଣେ ବହୁଲେପକ୍ଷେ କୃଷ୍ଣଜନ୍ମାଷ୍ଟମୀବ୍ରତଂ ।
ନକରୋତିନରୋ ଯସ୍ତୁ ସ ଭବେତ୍ କ୍ରୂର ରାକ୍ଷସଃ ।
ବର୍ଷେ ବର୍ଷେ ତୁ ଯାନାରୀ କୃଷ୍ଣଜନ୍ମାଷ୍ଟମୀବ୍ରତଂ ।
ନକରୋତି ମହାକ୍ରୂର୍ ବ୍ୟାଲୀଭବତି କାନନେ ।

ଭବିଷ୍ୟୋତ୍ତର ଖଣ୍ଡେ ।

ଶ୍ରାବଣର କୃଷ୍ଣପକ୍ଷୀୟ ଅଷ୍ଟମୀରେ ଯେପୁରୁଷ ଉକ୍ତବ୍ରତ ନ କରେ ସେ ମହାକ୍ରୂରରାକ୍ଷସ ଓ ଯେ ସ୍ତ୍ରୀ ବ୍ରତନକରେ ସେ କାଳସର୍ପିଣୀ ହୁଏ ପରନ୍ତୁ ସେହିଦିବସ ଫଳାଧିକ୍ୟ ଆଉ କହିଅଛନ୍ତି ଯେ ସେହି ଦିନ ପିତୃ ତର୍ପଣକଲେ ଗଙ୍ଗା ଶ୍ରାଦ୍ଧର ତୁଲ୍ୟହୁଏ । ସେହି ଦିବସ ଉପବାସକରିପରଦିବସେପାରଣାକରିବ । ଉକ୍ତଦିବସଅର୍ଦ୍ଧରାତ୍ରିର ସ-ମୟରେ ଶ୍ରୀକୃଷ୍ଣଙ୍କର ପୂଜାକରି ବସୁଦେବ , ଦେବକୀ ବଳଭଦ୍ର, ନନ୍ଦ ଯଶୋଦା , ଦକ୍ଷ , ଗର୍ଗ , ଓ ଚଣ୍ଡିକା ଏମାନଙ୍କର ପୂଜା କରିବ । ପରନ୍ତୁ ଏହି ଜନ୍ମାଷ୍ଟମୀ ବ୍ରତର ନିତ୍ୟତ୍ୱ ଓ କାମ୍ୟତ୍ୱ ଦୁଇପ୍ରକାର ଅଛି ଅର୍ଥାତ୍ କଲେ ପୁଣ୍ୟହୁଏ ନକଲେ ପାପହୁଏ । ପ୍ରମାଣଂ

ଭୂଷ୍ଟ୍ୟଥିଂଦେବକୀସୁତୋର୍ଜିଷ୍ଣୁନ୍ତ୍ୟିକ୍ଷକଂ ବ୍ରତଂ ।
କର୍ତ୍ତବ୍ୟଂଚନ୍ଦ୍ୟମାନେନ ଭକ୍ତ୍ୟାଭକ୍ତଜନୈରପି ।
ଅକୁର୍ବନ୍ ନରକଂ ଯାତି ଯାବଦନ୍ଦ୍ରା ଶ୍ଚତୁର୍ଦ୍ଦଶ ॥

ଦେବକୀ ନନ୍ଦନଙ୍କର ପ୍ରୀତି ନିମିତ୍ତ କୃଷ୍ଣ ଭକ୍ତଜନଙ୍କ ସହିତ ଭକ୍ତି ପୂର୍ବକ ସମସ୍ତେ ବ୍ରତ କରିବେ ଉକ୍ତ ବ୍ରତରେ ଲୁପ୍ତ ଭୁଷ୍ଟ ହୁଅନ୍ତୁ ଆଉ ନକଲେ ଚତୁର୍ଦ୍ଦଶ ଇନ୍ଦ୍ରଙ୍କର ଭୋଗ କାଳ ପର୍ଯ୍ୟନ୍ତ ନରକ ଭୋଗ କରିବାକୁ ହୁଏ ।

ସପ୍ତମୀସହିତାଷ୍ଟମ୍ୟାଂ ଭୂତ୍ୱା ଋକ୍ଷଂ ଦ୍ୱିଜୋତ୍ତମଂ ।
ପ୍ରାଜାପତ୍ୟଂ ଦ୍ୱିତୀୟେଽହ୍ନି ମୁହୂର୍ତ୍ତାର୍ଦ୍ଧଂ ଭବେଦ୍ୟଦି ॥
ତଦାଷ୍ଟଯାମିକଂ ଜ୍ଞେୟଂ ପ୍ରୋକ୍ତଂ ବ୍ୟାସାଦିଭିଃ ଧ୍ରୁବ୍ ।
ବ୍ରହ୍ମବୈବର୍ତ୍ତ ସ୍କନ୍ଦପୁରାଣୟୋଃ ।

ପୂର୍ବଦିନ ଅର୍ଦ୍ଧରାତ୍ରର ପର ରୋହିଣୀ ସହିତ ଅଷ୍ଟମୀ ଯୋଗ ହୋଇଥିଲେ ଏବଂ ପରଦିନ ରୋହିଣୀ ଶୁକ୍ଲାଷ୍ଟମୀ ଥିଲେ ଏପରିସ୍ଥଳେ ପରଦିନ ଉପବାସ ଓ ବ୍ରତ କରିବ ।

କୃଷ୍ଣାଷ୍ଟମୀ ସ୍କନ୍ଦଷଷ୍ଠୀ ଶିବରାତ୍ରୀ ଚତୁର୍ଦ୍ଦଶୀ ।
ଏତାଃ ପୂର୍ବଯୁତାଃ କାର୍ଯ୍ୟା ସ୍ତିଥ୍ୟନ୍ତେ ପାରଣଂ ଭବେତ୍ ॥
ବ୍ରହ୍ମବୈବର୍ତ୍ତେ ।

ଯଦି ଉଭୟ ଦିନ ରୋହିଣୀ ଯୋଗ ନଥାଏ କିମ୍ବା ପୂର୍ବ ଦିନେ ନକ୍ଷତ୍ର ସମ୍ବନ୍ଧ ଥାଏ ପରଦିନ ନକ୍ଷତ୍ର ସମ୍ବନ୍ଧ ନଥାଏ ଏପରିସ୍ଥଳେ ପୂର୍ବଦିନ ଉପବାସାଦି କାର୍ଯ୍ୟ କରିବ ।

ବର୍ଜ୍ଜନୀୟା ପ୍ରଯତ୍ନେନ ସପ୍ତମୀ ସହିତାଷ୍ଟମୀ ।
ସା ସଙ୍କାପି ନ କର୍ତ୍ତବ୍ୟା ସପ୍ତମୀ ସହିତାଷ୍ଟମୀ ॥

ଉଭୟଦିନ ଅର୍ଦ୍ଧରାତ୍ରରେ ରୋହିଣୀ ସହିତ ଅଷ୍ଟମୀ ଯୋଗ ହେଲେ ପରଦିନ ହେବ-ପୂର୍ବଦିନ ହେବନାହିଁ ।

ଏକଦିନ ମାତ୍ର ଜୟନ୍ତୀ ଲାଭହେଲେ ସେହିଦିନ ଉପବାସାଦି ହେବ ଉଭୟଦିନ ଜୟନ୍ତୀ ଲାଭହେଲେ ପରଦିନ ଉପବାସ ହେବ । ଅତି ଜୟନ୍ତୀ ଲାଭେ ରୋହିଣୀ ଯୁକ୍ତ ଅଷ୍ଟମୀରେ ଉପବାସାଦି କରିବ ।

ଉଭୟଦିନରେ ରୋହିଣୀଯୁକ୍ତ ଅଷ୍ଟମୀ ଲାଭ ପରଦିନ ରୋହିଣୀ ଅଭାବେ ଯେଉଁଦିନ ନିଶୀଥ ସମ୍ବନ୍ଧ ଅଛି ସେହିଦିନ ଉପବାସ ଜାଣିବ । ଉଭୟଦିନ ନିଶୀଥସମ୍ବନ୍ଧ ହେଲେ କିମ୍ବା ନ ହେଲେ ପରଦିନ ଉପବାସାଦି ହେବ ।ଏବ ପୂର୍ବଦିନ ଷଷ୍ଠୀ ଦଣ୍ଡାତ୍ମିକା ଅଷ୍ଟମୀ ହୁଏ କିନ୍ତୁ ରୋହିଣୀ ଯୋଗନାହିଁ । ପରଦିନ ଯଦି ରୋହିଣୀ ଯୁକ୍ତା ଅଷ୍ଟମୀ ହୁଏ ତେବେ ପରଦିନ ଉପବାସାଦି କରିବ ।

---

ଅଥ ପାରଣ ବିଧିଃ ।

ଅଷ୍ଟମ୍ୟାମଥ ରୋହିଣ୍ୟାଂ ନକୁର୍ଯ୍ୟାତ୍ ପାରଣଂ କ୍ୱଚିତ୍ ।
ହନ୍ୟାତ୍ ପୁରାକୃତଂ କର୍ମ ଉପବାସାର୍ଜ୍ଜିତଂ ଫଳଂ ।
ତିଥିରଷ୍ଟଗୁଣଂ ହନ୍ତି ନକ୍ଷତ୍ରଞ୍ଚ ଚତୁର୍ଗୁଣଂ ।
ତସ୍ମାତ୍ ପ୍ରଯତ୍ନତଃ କୁର୍ଯ୍ୟାତ୍ ତିଥିଭାନ୍ତେ ଚ ପାରଣଂ ।

ଇତି ଭବିଷ୍ୟେ ବ୍ରହ୍ମବୈବର୍ତ୍ତ ବିଷ୍ଣୁରହସ୍ୟେ ।

ରୋହିଣୀଯୁକ୍ତ ଅଷ୍ଟମୀଥିଲେ ପାରଣାକରିବନାହିଁ-କଲେ ପୂର୍ବ କୃତକର୍ମ ଏବଂ ଉପବାସଜନିତ ଫଳନଷ୍ଟହୁଏ । ଜନ୍ମାଷ୍ଟମୀର ପାରଣାପକ୍ଷେ ନିର୍ଣ୍ଣୟସିନ୍ଧୁ ଏବ ଅନ୍ୟାନ୍ୟ ଗ୍ରନ୍ଥପକ୍ଷରେ ଦେଖିବ ।

ତିଥିନକ୍ଷତ୍ର ସଂଯୋଗେ ତୂପବାସୋ ଯଦାଭବେତ୍ ।
ପାରଣନ୍ତୁ ନ କର୍ତ୍ତବ୍ୟଂ ଯାବନ୍ନୈକସ୍ୟ ସଂକ୍ଷୟଃ ।

ଯେଉଁ ତିଥି ଓ ନକ୍ଷତ୍ର ଯୋଗେ ଉପବାସାଦି କରିବ ତାହାର ଏକ କ୍ଷୟ ବ୍ୟତିରେକେ ପାରଣାକର୍ମ କର୍ତ୍ତବ୍ୟନୁହେ ।

ସଂଯୋଗିକେ ବ୍ରତେ ପ୍ରାପ୍ତେ ଯଦ୍ୟେକୋ ଽପି ବିମୁଚ୍ୟତେ ।
ତଦୈବ ପାରଣଂ କୁର୍ଯ୍ୟା ଦେବଂ ବେଦବିଦୋ ବିଦୁଃ ।

ଯେବେଁତିଥି ନକ୍ଷତ୍ର ଯୋଗେ ଉପବାସହୁଏ ତେବେ ଏକର ବିଯୋଗେ ପାରଣାକରିବ ଏହା ବେଦ ବିଦ ଗଣ କହିଅଛନ୍ତି ।

ତିଥ୍ୟକ୍ଷଯୋର୍ଯଦାଭେଦୋ ନକ୍ଷତ୍ରସ୍ୟାନ୍ତ ଏବ ବା ।
ଅର୍ଦ୍ଧରାତ୍ରେ ଽଥବାକୁର୍ଯ୍ୟାତ୍ ପାରଣନ୍ତୁ ପରେ ଽହନି ।

ଯଦି ଜୟନ୍ତୀଯୋଗ ପୂର୍ବଦିନେ ଉପବାସହୁଏ ପରଦିନ ରାତ୍ରି ଅର୍ଦ୍ଧି ପ୍ରହର ଯାମାନ୍ତେ ତିଥି ନକ୍ଷତ୍ର ଉଭୟର କି ଏକ ବିମୁକ୍ତିହୁଏ ତେବେ ସେହିଦିନ ପାରଣାକରିବ ।

ଉପବାସ ପରଦିନ ତିଥି ଓ ନକ୍ଷତ୍ର ଅନ୍ତେ ପାରଣା କରିବ ଯେତେବେଳେ ମହାନିଶାର ପୂର୍ବେ ଏକର ଅବସାନହୁଏ ଅନ୍ୟର ମହାନିଶାରେ ସ୍ଥିତିଥାଏ ସେତେବେଳେ ଏକର ଅବସାନେ ପାରଣା କରିବ ମହା ନିଶାର ଯଦ୍ୟପି ଉଭୟରେ ସ୍ଥିତିଥାଏ ତେବେ ସେହିଦିନ ପ୍ରାତଃକାଳରେ ପାରଣା କରିବ ।

କୌଣସି ୨ ପଣ୍ଡିତ ଦ୍ୱାଦଶମାସରେ ରୋହିଣୀଯୁକ୍ତାଷ୍ଟମୀକୁ ଜୟନ୍ତ୍ୟଷ୍ଟମୀକହନ୍ତି କିନ୍ତୁ ତାହା ହୋଇ ପାରେନାହିଁ କାରଣ ସୂର୍ଯ୍ୟର ସମସୂତ୍ରପାତ ଅବସ୍ଥାରେ ଅମାବାସ୍ୟାହୁଏ । ଏହି ନିୟମଜ୍ୟୋତିଷ ଶାସ୍ତ୍ରରେ କହିଅଛନ୍ତି । ଏସ୍ଥାନରେ ସୂର୍ଯ୍ୟଦ୍ୱାଦଶମାସରେ ଦ୍ୱାଦଶ-

ରାଶିରେ ଭ୍ରମଣକରନ୍ତି ଏହାଙ୍କ ସ୍ଥିତିକାଳ୍ୟ ଯଦ୍ଦ୍ୱାରାହେଲା ତେବେ-
ଭାଦ୍ରବ ମାସର ଯେଉଁରାଶିରେ ଭୋଗକରନ୍ତି ଅନ୍ୟମାସେ ସେହିରା-
ଶିରେ କିପ୍ରକାର ଭୋଗସମ୍ଭବ ହେବ । ଅତଏବ ଦ୍ୱାଦଶମାସର
ରୋହିଣୀ ଯୁକ୍ତାଷ୍ଟମୀ ନିତାନ୍ତ ଅସମ୍ଭବ । ଭାଦ୍ରବମାସ ଭିନ୍ନ ଅନ୍ୟ
ମାସରେ ରୋହିଣୀ ଯୁକ୍ତା ଅଷ୍ଟମୀ ହୋଇ ନପାରେ ।

ଦୂର୍ବାଷ୍ଟମୀ

ସାଚ ଶୁକ୍ଲାପି ପୂର୍ବଯୁକ୍ତା ଗ୍ରାହ୍ୟା

ଭାଦ୍ରବମାସର ଶୁକ୍ଳପକ୍ଷୀୟ ଅଷ୍ଟମୀକୁ ଦୂର୍ବାଷ୍ଟମୀ କହନ୍ତି ତାହା
ପୂର୍ବଯୁତାଗ୍ରାହ୍ୟା ପ୍ରମାଣଂ ଯଥା,

ଶ୍ରାବଣୀ ଦୌର୍ଗିନବମୀ ଦୂର୍ବାଚୈବ ହୁତାଶନୀ ।
ପୂର୍ବ ବଦ୍ଧୈବ କର୍ତ୍ତବ୍ୟା ଶିବରାତ୍ରୀ ବଳେର୍ଦ୍ଦିନଂ ॥

ଦୂର୍ଗାଷ୍ଟମୀ, ଦୂର୍ବାଷ୍ଟମୀ, ରମ୍ଭାତୃତୀୟା, ଶିବରାତ୍ରୀ ଓ ଦ୍ୟୁ-
ତପ୍ରତିପତ୍ ଏମାନେ ପୂର୍ବବିଦ୍ଧାକର୍ତ୍ତବ୍ୟା । ଅର୍ଥାତ୍ ଏମାନେ ପୂର୍ବତି-
ଥିଯୁକ୍ତ ଗ୍ରହଣ ହୋଇ ଥାନ୍ତି ।

ଭାଦ୍ରବମାସର ଶୁକ୍ଳପକ୍ଷୀୟ ଅଷ୍ଟମୀରେ ଯେ ଦୂର୍ବାଷ୍ଟମୀ ବ୍ରତକରେ
ତାହାର ସନ୍ତାନ ବୃଦ୍ଧିହୁଏ । ଯେପ୍ରକାର ଦୂର୍ବା ବୃଦ୍ଧିହୁଏ ସେହିପ୍ର-
କାର ତାରକୁଳ ବୃଦ୍ଧିହୁଏ ।

ତଥାଚ

ପକ୍ଷେ ଭାଦ୍ରପଦେ ଚୈବ ଶୁକ୍ଳପକ୍ଷେ ଯୁଧିଷ୍ଠିର ।
ଦୂର୍ବାଷ୍ଟମୀ ବ୍ରତଂ ପୂଣ୍ୟଂ ଯଃକରୋତି ସମାନବଃ ॥
ନତସ୍ୟ କ୍ଷୟମାପ୍ନୋତି ସନ୍ତାନଂ ସାପ୍ତପୌରୁଷଂ ।
ନନ୍ଦତେ ବର୍ଦ୍ଧତେ ନିତ୍ୟଂ ଯଥାଦୂର୍ବା ତଥାକୁଳଂ ॥
ଇତି ଭବିଷ୍ୟ ପୁରାଣଂ ।

ଆଶ୍ୱିନ ମାସର ଶୁକ୍ଳାଷ୍ଟମୀକୁ ମହାଷ୍ଟମୀ କହନ୍ତି । ତହିଁରେ ଦୁର୍ଗାଙ୍କର ପୂଜା ଓ ଉପବାସ କରିବ । କିନ୍ତୁ ପୁତ୍ରବାନ୍ ବ୍ୟକ୍ତିର ଉପବାସ ନାହିଁ ସ୍ତ୍ରୀଲୋକଙ୍କ ମଧ୍ୟରେ ସମସ୍ତେ କରିପାରନ୍ତି । ପରେ ନବମୀରେ ମତ୍ସ୍ୟମାଂସ ଇତ୍ୟାଦି ଦ୍ୱାରା ପାରଣା କରିବ ଏହି ବ୍ରତ କଲେ ମହା ଧନବାନ୍ ହୁଅନ୍ତି । ପୁତ୍ରବାନ୍ ବ୍ୟକ୍ତି ଭକ୍ଷ୍ୟ କରିବ ।

କନ୍ୟାସଂସ୍ଥେ ରବାବୀଶେ ଶୁକ୍ଳାଷ୍ଟମ୍ୟାଂ ପ୍ରପୂଜୟେତ୍ ।
ସୋପବାସୋ ନିଶାର୍ଦ୍ଧେ ତୁ ମହାବିଭବବିସ୍ତରୈଃ ॥
ପୂଜାଂ ସମାରଭେତ୍ ଦେବ୍ୟା ନକ୍ଷତ୍ରେ ବାରୁଣେଽପି ବା ॥
ଇତି ଦେବୀ ପୁରାଣଂ ॥

ଉପବାସଂ ମହାଷ୍ଟମ୍ୟାଂ ପୁତ୍ରବାନ୍ ନସମାଚରେତ୍ ।
ଇତି କାଳିକା ପୁରାଣଂ ॥

ଅଷ୍ଟମ୍ୟାଂ ସମୁପୋଷ୍ୟୈବ ନବମ୍ୟାମପରେଽହନି ।
ମତ୍ସ୍ୟ ମାଂସୋପହାରେଣ ଦଦ୍ୟାନ୍ନୈବେଦ୍ୟମୁତ୍ତମଂ ॥
ତେନୈବବିଧାନେନ ସ୍ୱୟଂ ଭୁଞ୍ଜୀତନାନ୍ୟଥା ॥
ଇତି ଦେବୀ ପୁରାଣଂ ॥

ଅଷ୍ଟମୀ ଉପବାସର ଫଳଶ୍ରୁତି

ଏକାଦଶୀ କୋଟି ସହସ୍ରତୁଲ୍ୟା ,
ସିତାଷ୍ଟମୀ ପର୍ବତ ରାଜପୁତ୍ର୍ୟାଃ ।
ତତୋଽପି ଶୁକ୍ଳା ଗଣିତା ଶତେନ ,
ପରାଶରବ୍ୟାସ ବଶିଷ୍ଠ ମୁଖ୍ୟୈଃ ॥

ଇତି ଦେବୀପୁରାଣଂ

ସହସ୍ରକୋଟି ଏକାଦଶୀ କଲେ ଯେଫଳହୁଏ ମହାଷ୍ଟମୀର ଉପବାସରେ ସେହିଫଳହୁଏ ଆଉ ଧନ ଓ ପୁତ୍ରଲାଭହୁଏ । ପରନ୍ତୁ ମହାଷ୍ଟମୀ ବ୍ରତ ନବମୀ ସଂଯୁକ୍ତାରେ କରିବ ( ଅଷ୍ଟମୀ ନବମୀ ମିଶା କରିବ୍ୟା ଭୂତମିଶ୍ରିତା ) ଏହାଲେଖିଅଛି ।

ଗୋଷ୍ଠାଷ୍ଟମ୍ୟାଂ ଗବାଂପୂଜାଂ ଗୋଗ୍ରାସଂ ଗୋପ୍ରଦକ୍ଷିଣଂ
ଗବାନୁ ଗମନଂ କୁର୍ଯ୍ୟାତ୍ ସର୍ବପାପବିମୁକ୍ତୟେ ।

କାର୍ତ୍ତିକର ଶୁକ୍ଳାଷ୍ଟମୀକୁ ଗୋଷ୍ଠାଷ୍ଟମୀ କହନ୍ତି ସେହି ଦିବସେ ଗୋରୁ ପୂଜା ଗୋଗ୍ରାସଦାନ ଗବାନୁଗମନକଲେ ମହାପୁଣ୍ୟ ହୁଏ ଅଗ୍ରହାୟଣ ଠାରୁ ଅର୍ଥାତ୍ ଅଗ୍ରହାୟଣ ପୌଷ ମାଘ ଏହି ତିନି ମାସର କୃଷ୍ଣାଷ୍ଟମୀକୁ ଅଷ୍ଟକା କହନ୍ତି ଅର୍ଥାତ୍ ଅଗ୍ରହାୟଣ ମାସର କୃଷ୍ଣାଷ୍ଟମୀକୁ ପୂପାଷ୍ଟକା, ସେଥିରେ ପିଷ୍ଟକଦ୍ୱାରା ପିତୃଲୋକର ଶ୍ରାଦ୍ଧ କରିବ ପୌଷମାସରେ ମାଂସାଷ୍ଟକା, ମାଂସଦ୍ୱାରା ପିତୃ ଲୋକର ଶ୍ରାଦ୍ଧ କରିବ, ମାଘମାସରେ ଶାକାଷ୍ଟକା, ଶାକଦ୍ୱାରା ପିତୃ ଲୋକର ଶ୍ରାଦ୍ଧ କରିବ; ପ୍ରମାଣଂ ଯଥା,

ପିତୃଦାନାୟ ମୂଲେସ୍ୟ ରଷ୍ଟକାସ୍ତିସ୍ର ଏବଚ ।
କୃଷ୍ଣପକ୍ଷେ ବରିଷ୍ଠାହି ପୂର୍ବାଚୈନ୍ଦ୍ରୀ ବିଭାବ୍ୟତେ ।
ପ୍ରାଜାପତ୍ୟା ଦ୍ୱିତୀୟାସ୍ୟା ତୃତୀୟାବୈଶ୍ୱଦେବକୀ ।
ଆଦ୍ୟାପୂପୈଃସଦାକାର୍ଯ୍ୟା ମାଂସୈରନ୍ୟାଭବେତ୍ସଦା ।
ଶାକୈଃ କାର୍ଯ୍ୟା ତୃତୀୟାସ୍ୟା ଦେଷ ଦ୍ରବ୍ୟଗତୋବିଧିଃ ।
ବାୟୁପୁରାଣେ ।

---

ଅଥ ଭୀଷ୍ମାଷ୍ଟମୀ

ଶୁକ୍ଲାଷ୍ଟମ୍ୟାନ୍ତୁ ମାଘସ୍ୟ ଦଦ୍ୟାଭୀଷ୍ମାୟ ଯୋଜଲଂ ।
ସମ୍ବତ୍ସରକୃତଂ ପାପଂ ତତ୍କ୍ଷଣାଦେବ ନଶ୍ୟତ ।
ଇତି ଭବିଷ୍ୟୋତ୍ତରେ

ମାଘମାସର ଶୁକ୍ଲପକ୍ଷୀୟ ଅଷ୍ଟମୀରେ ଭୀଷ୍ମତର୍ପଣ କରିବାକୁହିଁଏ ଯେଉଁବ୍ୟକ୍ତି ଉକ୍ତଦିନରେ ଜଳଦାନ କରିବେ ତାହାଙ୍କର ସମ୍ବତ୍ସରର ପାପ କ୍ଷୟହେବ ।

ଫଳତଃ ଏହି ତର୍ପଣକୁ ଚତୁର୍ବର୍ଣ୍ଣ ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର କରିପାରିବେ । ପ୍ରମାଣଂ

ଅଷ୍ଟମ୍ୟାନ୍ତୁ ସିତେପକ୍ଷେ ଭୀଷ୍ମାୟତୁ ତିଲୋଦକଂ ।
ଅନ୍ନଞ୍ଚ ଦଦ୍ୟୁର୍ବଦଦ୍ଭ୍ୟଃ ସର୍ବେ ବର୍ଣ୍ଣା ଦ୍ୱିଜାତୟଃ ।
ଧରଣୀ ଧୃତାସ୍ମୃତଃ ।

ଏବଂ ଏହି ମନ୍ତ୍ରଦ୍ୱାରା ଉକ୍ତ ବ୍ୟକ୍ତିଙ୍କର ତର୍ପଣ କରିବ ।

ବୈୟାଘ୍ର ପଦ୍ୟ ଗୋତ୍ରାୟ ସାଂକୃତି ପ୍ରବରାୟଚ ।
ଅପୁତ୍ରାୟ ଦଦାମ୍ୟେତତ୍ ସଲିଲଂ ଭୀଷ୍ମବର୍ମଣେ ।

ପ୍ରାର୍ଥନା ମନ୍ତ୍ରଃ ।

ଭୀଷ୍ମଃ ଶାନ୍ତନବୋବୀରଃ ସତ୍ୟବାଦୀ ଜିତେନ୍ଦ୍ରିୟଃ ।
ଆଭିରଦ୍ଭିରବାପ୍ନୋତୁ ପୁତ୍ରପୌତ୍ରୋଚିତାଂ କ୍ରିୟାଂ ।

---

ଅଥାଶୋକାଷ୍ଟମୀ

ମୀନେ ମଧୌ ଶୁକ୍ଲପକ୍ଷେଽଶୋକାଖ୍ୟାଂ ଚ ତଥାଷ୍ଟମୀଂ ।
ପିବେତ ଶୋକକଳିକାଃ ସ୍ନାତ୍ୱା କ୍ଲୀବରଦ୍ୟବାରଣି ।
ଅଶୋକକଳିକା ଷ୍ଟାଷ୍ଟୌ ଯେ ପିବନ୍ତି ପୁନର୍ବସୌ ।

ଚୈତ୍ରେମାସି ସିତାଷ୍ଟମ୍ୟାଂ ନାତଶୋକ ମବାପ୍ନୁଯୁଃ ।
ଇତି ସ୍କନ୍ଦପୁରାଣ ।

ଚୈତ୍ରମାସର ଶୁକ୍ଲାଷ୍ଟମୀକୁ ଅଶୋକାଷ୍ଟମୀ କହନ୍ତି ସେଥିରେ ଆଠୋଟି ଅଶୋକ କଳିକା ଭକ୍ଷଣ କଲେ ଓ ସ୍ନାନ ଦାନକଲେ ଶୋକପାଇବାକୁ ହୁଏ ନାହିଁ । ଏବଂ ଲୌହିତ୍ୟଜଳେସ୍ନାନ କରିବ ।

ଅଶୋକ କଳିକା ପାନର ମନ୍ତ୍ର

ତ୍ୱାମଶୋକ ହରାଭୀଷ୍ଟ ମଧୁମାସ ସମୁଦ୍ଭବ ।
ପିବାମି ଶୋକସନ୍ତପ୍ତୋ ମାମଶୋକଂ ସଦାକୁରୁ ।

ଅତଏବ ଅଷ୍ଟମୀରେ ଯଦି ବୁଧବାର ଓ ପୁନର୍ବସୁ ନକ୍ଷତ୍ର ପାଏ ତେବେ ତାହାକୁ ବ୍ରହ୍ମପୁତ୍ରନଦେ ସ୍ନାନକରିଲେ ବାଜପେୟ ଯଜ୍ଞର ଫଳଲାଭ ହୁଏ ।

ପୁନର୍ବସୁବୁଧୋପେତାଂ ଚୈତ୍ରେମାସି ସିତାଷ୍ଟମୀଂ ।
ସ୍ରୋତଃସୁ ବିଧିବ ସ୍ନାତ୍ୱା ବାଜପେୟ ଫଳଂଲଭେତ୍ ।
ଇତି ବଚନୁଃ ।

---

ଅଥ ନବମୀ

ସାଗ୍ନ୍ୟଷ୍ଟମୀଯୁତା ଗ୍ରାହ୍ୟା ।
ଅଷ୍ଟମୀଯୁକ୍ତା ନବମୀ ଗ୍ରାହ୍ୟା ।

ଯେହେତୁ ଅଷ୍ଟମୀର ସହିତ ନବମୀର ଯୁଗ୍ମାଦର ଭାଦ୍ରବମାସର ଆର୍ଦ୍ରାଯୁକ୍ତା କୃଷ୍ଣନବମୀରେ ବୋଧନ କଳ୍ପର ଆରମ୍ଭ କରିବାକୁ ହୁଏ । ସେହିନବମୀକୁ ବୋଧନ ନବମୀ କହନ୍ତି । ସଂକଳ୍ପ ସ୍ଥଳେ ଆଶ୍ୱିନମାସର ଉଲ୍ଲେଖ କରିବାକୁ ହେବ ପ୍ରମାଣ ପୂର୍ବେ ଉକ୍ତ

ହୋଇଅଛୁ ଅଉ ଯଦ ଆର୍ଦ୍ରା ନକ୍ଷତ୍ର ନପାଏ ତେବେ ତଥି ମାହାତ୍ମ୍ୟହେତୁ ସେହି ଦିବସ କରିବାକୁ ହେବ ।

ପ୍ରମାଣଂ

କନ୍ୟାୟାଂ କୃଷ୍ଣପକ୍ଷେତୁ ପୂଜୟିତ୍ୱାର୍ଦ୍ରଭେଦିବା ।
ନବମ୍ୟାଂ ବୋଧୟେଦ୍ଦେବୀଂ ମହାଉତ୍ସବପୂର୍ବୈଃ ।

ଲିଙ୍ଗପୁରାଣଂ ।

ତଥିନକ୍ଷତ୍ରୟୋ ର୍ଯୋଗେ ଦ୍ୱୟୋରେ ବାନୁପାଳନଂ ।
ଯୋଗାଭାବେ ତଥିଗ୍ରାହ୍ୟା ଦେବ୍ୟାଃ ପୂଜନକର୍ମଣି ।

ଇତ ଦେବଲଃ ।

କାର୍ତ୍ତିକର ଶୁକ୍ଳ ପକ୍ଷୀୟ ନବମୀରେ ବ୍ରହ୍ମାଚଣ୍ଡୀ ପୂଜାକରିଥିଲେ ଓ ସେହି ଦିବସ ଯୋଗାଦ୍ୟା ସେହିଦିନ ଚଣ୍ଡୀ ପୂଜାକଲେ ସେହି ଫଳ ପ୍ରାପ୍ତହୁଏ ।

ମାର୍ଗେଶ୍ଚ ତୁର୍ଦ୍ଦିଯତ୍ପୁଣ୍ୟଂ ତ୍ୱଥିନା ପୂଜ୍ୟ ଚଣ୍ଡିକାଂ ।
ତତ୍ଫଳଂ ଲଭତେ ଵୀର ନବମ୍ୟାଂ କାର୍ତ୍ତିକସ୍ୟଚ ।

ଇତ ଭବିଷ୍ୟ ପୁରାଣଂ

ତଥାଚ

ମାଘମାସସ୍ୟ ଯା ଶୁକ୍ଳା ନବମୀ ଲୋକପୂଜିତା ।
ମହାନନ୍ଦେତ ସାପ୍ରୋକ୍ତା ସଦାନନ୍ଦକରୀ ନୃଣାଂ ।
ସ୍ନାନଂ ଦାନଂ ତପୋହୋମଂ ଦେବାର୍ଚ୍ଚନମୁପୋଷଣଂ ।
ସର୍ବଂ ତଦକ୍ଷୟଂ ପ୍ରୋକ୍ତଂ ଯଦସ୍ୟାଂ କ୍ରିୟତେ ନରୈଃ ॥

ଇତ ଭବିଷ୍ୟ ପୁରାଣଂ ।

ମାଘମାସର ଶୁକ୍ଳାନବମୀର ନାମ ମହାନନ୍ଦା , ସେହିଦିନ ସ୍ନାନ

ଦାନ ଜପ ଓ ହୋମାଦର ଫଳ ଅକ୍ଷୟ ହୁଏ ।

---

ଅଥ ଶ୍ରୀ ରାମ ନବମୀ

ଚୈତ୍ରେମାସି ନବମ୍ୟାନ୍ତୁ ରାମୋ ଜାତଃ ସ୍ୱୟଂ ହରଃ ।
ପୁନର୍ବସ୍ୱୃକ୍ଷସଂଯୁକ୍ତା ସା ତିଥିଃ ସର୍ବକାମଦା ॥

ଇତି ଅଗସ୍ତ୍ୟ ସଂହିତା ।

ଚୈତ୍ରମାସର ପୁନର୍ବସୁ ନକ୍ଷତ୍ର ଯୁକ୍ତ ଶୁକ୍ଳା ନବମୀରେ ଭଗବାନ୍ ରାମରୂପରେ ଜନ୍ମ ଗ୍ରହଣ କରିଥିଲେ ଏଥିନିମିତ୍ତ ସେହି ତିଥି ସର୍ବାର୍ଥପ୍ରଦ ।

ଚୈତ୍ରଶୁକ୍ଳନବମ୍ୟାଂତୁ ସା ତିଥିଃ ସର୍ବକାମଦା ।
ଶ୍ରୀ ରାମ ନବମୀପ୍ରୋକ୍ତା କୋଟିସୂର୍ଯ୍ୟଗ୍ରହାଧିକା ॥
ତସ୍ମିନ୍‌ଦିନେ ମହାପୁଣ୍ୟେ ରାମ ମୁଦ୍ଦିଶ୍ୟ ଭକ୍ତିତଃ ।
ଯତ୍କିଞ୍ଚିତ୍ କ୍ରିୟତେ କର୍ମ ତଭ୍ଵେକ୍ଷୟକାରକଂ ।
ଉପୋଷଣଂ ଜାଗରଣଂ ପିତୃନୁଦ୍ଦିଶ୍ୟତର୍ପଣଂ ।
ତସ୍ମିନ୍ଦିନେତୁ କର୍ତ୍ତବ୍ୟଂ ବ୍ରହ୍ମ ପ୍ରାପ୍ତି ମଭୀପ୍ସୁଭିଃ ।

ଇତ୍ୟ ଗସ୍ତ୍ୟ ସଂହିତା ।

ଉକ୍ତ ନବମୀ କୋଟି ସୂର୍ଯ୍ୟଗ୍ରହଣ କାଳରନ୍ୟାୟ ଏଥିସକାଶେ ସେହିଦନ ଯେ କୌଣସି କର୍ମ କରାଯାଏ ତାହାଅକ୍ଷୟଫଳପ୍ରଦହୁଏ । ଅର୍ଥାତ୍ ଉପବାସ, ରାତ୍ରି ଜାଗରଣ ପିତୃତର୍ପଣକଲେ ଅନନ୍ତ କାଳ-ବ୍ରହ୍ମପ୍ରାପ୍ତି ହୁଏ ।

ଶ୍ରୀରାମନବମୀ ବୈଷ୍ଣବମାନଙ୍କପକ୍ଷେ ଅଷ୍ଟମୀ ବିଦ୍ଧାକରିବ୍ୟ ନୁହେ ଅର୍ଥାତ୍ ବିଷ୍ଣୁପରାୟଣ ବ୍ୟକ୍ତିମାନେ ଦଶମୀ ଯୁକ୍ତାହେଲେ ଉପବା-

ସାଦ୍ କରିବେ । ଆଉ ଅବୈଷ୍ଣବମାନେ ଅଷ୍ଟମୀ ବିଦ୍ଧାରେ ଉପବାସାଦ୍ କରିବେ ।

ପ୍ରମାଣଂ କାଲମାଧବୀୟେ ପି ସ୍ମାର୍ତ୍ତାନ୍ ପ୍ରତି ।
ନବମୀ ଚାଷ୍ଟମୀ ବିଦ୍ଧୋପୋଷ୍ୟା ବିଷ୍ଣୁପରାୟଣୈଃ ॥
ଅବୈଷ୍ଣବୈସ୍ତୁ ଅଷ୍ଟମୀ ବିଦ୍ଧୈବଗ୍ରାହ୍ୟା ।

ଉପବାସର ଦଶମୀରେ ପାରଣାକରିବ । ଯଦିପରଦିନ ଦଶମୀ ନଥାଏ ସେଦିନ ଏକାଦଶୀ ତେବେ ଅଷ୍ଟମୀ ବିଦ୍ଧାରେ ବୈଷ୍ଣବା ବୈଷ୍ଣବ ସାଧାରଣରେ ଉପବାସ କରିବେ ।

ପରଦିନେ ଦଶମ୍ୟା ମେବ ପାରଣମିତି ନିୟମାତ୍ ।
ପରଦିନେ ଏକାଦଶୀ ସମ୍ଭବେତ ଅଷ୍ଟମୀ ବିଦ୍ଧୈବଗ୍ରାହ୍ୟା ।
ଇତି ସ୍ମୃତିଃ ।

---

ଅଥଦଶମୀ

ସାଚ ଶୁକ୍ଳେକାଦଶୀ ଯୁତା କୃଷ୍ଣା ଚ ନବମୀଯୁତା ଗ୍ରାହ୍ୟା ।

ଶୁକ୍ଳ ପକ୍ଷୀୟ ଦଶମୀ ଏକାଦଶୀ ଯୁକ୍ତ ଓ କୃଷ୍ଣପକ୍ଷୀୟ ଦଶମୀ ନବମୀ ଯୁକ୍ତ ଗ୍ରାହ୍ୟ , ଅର୍ଥାତ୍ ଉପବାସ ଓ ଦୈବ ପୈତୃ କର୍ମ ଉକ୍ତ ପ୍ରକାରେ ପ୍ରସିଦ୍ଧ । ପ୍ରମାଣଂ ;—

ଶୁକ୍ଳପକ୍ଷେ ତିଥିର୍ଗ୍ରାହ୍ୟା ଯସ୍ୟାମଭ୍ୟୁଦିତୋରବିଃ ।
କୃଷ୍ଣପକ୍ଷେ ତିଥିର୍ଗ୍ରାହ୍ୟା ଯସ୍ୟାମସ୍ତମିତୋରବିଃ ॥
ଇତି ବିଷ୍ଣୁଧର୍ମୋତ୍ତରଃ ।

---

ଅଥଦଶହରା

ଜ୍ୟୈଷ୍ଠସ୍ୟ ଶୁକ୍ଳଦଶମୀ ସମ୍ୱତ୍ସରମୁଖୀସ୍ମୃତା ।
ତସ୍ୟାଂ ସ୍ନାନଂ ପ୍ରକୁର୍ବୀତ ଦାନଂ ଚୈବ ବିଶେଷତଃ ॥
ଯାଂ କାଞ୍ଚିତ୍ ସରିତଂପ୍ରାପ୍ୟ ଦଦ୍ୟାଦର୍ଭୈସ୍ତିଲୋଦକଂ ।
ମୁଚ୍ୟତେ ଦଶଭିଃ ପାପୈଃ ସୁମହାପାତକୋପମୈଃ ॥

ଇତିବ୍ରହ୍ମପୁରାଣ ବ୍ରହ୍ମ ବୈବର୍ତ୍ତୟୋଃ ।

ଜ୍ୟେଷ୍ଠମାସର ଶୁକ୍ଳପକ୍ଷୀୟ ଦଶମୀକୁ ଦଶହରା କହନ୍ତି , ଉକ୍ତ ଦିନ ଗଙ୍ଗାଜଳେ ସ୍ନାନ କୁଶଯୁକ୍ତ ତିଳୋଦକ ତର୍ପଣ ଦାନକଲେ ଦଶବିଧ ପାପ କ୍ଷୟହୁଏ । ତଥାଚ

ଜ୍ୟୈଷ୍ଠେ ଶୁକ୍ଳ ଦଶମ୍ୟାଂତୁ ହସ୍ତୋ ଯୋଗେନ ଜାହ୍ନବୀ ।
ହରତେ ଦଶପାପାନି ତସ୍ମାତ୍ ଦଶହରା ସ୍ମୃତା ॥

ଇତି ଭବିଷ୍ୟ ପୁରାଣଂ ॥

ଜ୍ୟେଷ୍ଠମାସର ଶୁକ୍ଳାଦଶମୀରେ ଯଦି ହସ୍ତା ନକ୍ଷତ୍ର ଯୋଗହୁଏ ତେବେ ଦଶଜନ୍ମ କୃତ ଦଶବିଧ ପାପ ଗଙ୍ଗାସ୍ନାନ ମାତ୍ରେ କ୍ଷୟହୁଏ । ଅତ୍ ଯଦି ମଙ୍ଗଳବାର ହୁଏ ତେବେ ଯେଦିନ ମଙ୍ଗଳବାର ସେଦିନ ସ୍ନାନ ଦାନାଦି କର୍ତ୍ତବ୍ୟ ଦଶମୀରେ କେବଳ ଦଶବିଧ ପାପକ୍ଷୟ ନିମିତ୍ତ କର୍ତ୍ତବ୍ୟ ।

ଜ୍ୟୈଷ୍ଠେମାସି କ୍ଷିତିସୁତଦିନେ ଶୁକ୍ଳପକ୍ଷେ ଦଶମ୍ୟାଂ
ହସ୍ତେ ଶୈଳାନ୍ନିରଗମଦିୟଂ ଜାହ୍ନବୀ ମର୍ତ୍ତ୍ୟଲୋକଂ ॥
ପାପାନ୍ୟସ୍ୟା ହରତି ଚ ତିଥୌ ସାଦଶେତ୍ୟା ହୁଗର୍ଯ୍ୟାଃ ।
ପୁଣ୍ୟଂ ଦଦ୍ୟା ଦପିଶତଗୁଣଂ ବାଜମେଧାଯୁତସ୍ୟ ।

ଇତିଶଙ୍ଖଃ ।

[ ବିଜୟା ଦଶମୀ ]

ଆଶ୍ୱିନର ଶୁକ୍ଳ ଦଶମୀରେ ଦେବୀ ବିସର୍ଜନ କରିବ । ସେହି ଦଶମୀ ତିଥି ଉଦୟ ଗାମିନୀ ପ୍ରଶସ୍ତ, ପ୍ରମାଣଂ ;—

ଭଗବତ୍ୟାଃ ପ୍ରବେଶାଦିବିସର୍ଜାନ୍ତା ଶ୍ଚୟାଃକ୍ରିୟାଃ ।
ତିଥା ବୁଦୟଗାମିନ୍ୟାଂ ସର୍ବାସ୍ତାଃ କାରୟେ ଦ୍ବୁଧଃ ।
ଇତି ନନ୍ଦିକେଶ୍ୱର ପୁରାଣଂ ।

ଉକ୍ତ ଦଶମୀ ପରଯୁକ୍ତା ପ୍ରଶସ୍ତନୁହେ ଦଶମୀରେ ଅପରାହ୍ଣତା ପୂଜାକରି ବିସର୍ଜନାଦି କରିବ ।

ଆଶ୍ୱିନେ ଶୁକ୍ଳପକ୍ଷସ୍ୟ ଦଶମ୍ୟାଂ ପୂଜୟେ ତ୍ତଥା ।
ଏକାଦଶ୍ୟାଂ ନକୁର୍ବୀତ ପୂଜନଞ୍ଚାପରାଜିତଂ ।
ଇତି ଶିବରହସ୍ୟଂ ।

---

[ ଅଥ ଏକାଦଶୀ ]

ସାଚ ପରଯୁତା ଗ୍ରାହ୍ୟା ଯୁଗ୍ମାତ୍ ।
ଇତି ସ୍ମାର୍ତ୍ତଃ ।

ଦ୍ୱାଦଶୀସହିତ ଯୁଗ୍ମାଦରହେତୁ ପରଯୁତା ଅର୍ଥାତ୍ ଦ୍ୱାଦଶୀ ଯୁକ୍ତା ଏକାଦଶୀ ପ୍ରଶସ୍ତ ।

ଗୃହସ୍ଥୋ ବ୍ରହ୍ମଚାରୀ ଚ ଅହିତାଗ୍ନି ସ୍ତଥୈବଚ ।
ଏକାଦଶ୍ୟାଂ ନଭୁଞ୍ଜୀତ ପକ୍ଷୟୋ ରୁଭୟୋରପି ।
ଇତି ଲିଙ୍ଗପୁରାଣଂ ।

ଉଭୟ ପକ୍ଷୀୟ ଏକାଦଶୀରେ ଗୃହସ୍ଥ, ଯତି, ବ୍ରହ୍ମଚାରୀ ସାଗ୍ନିକ ସମସ୍ତେ ଉପବାସକରିବେ କିନ୍ତୁ ପୁତ୍ରବାନ୍ ଗୃହସ୍ଥ କୃଷ୍ଣପକ୍ଷେ ଉପବାସକରିବେ ନାହିଁ ।

ଅତଃପରେ ୧ ହନ ସଂକ୍ରାନ୍ତ୍ୟବସିତୈକାଦଶୀ ଦିନେ ।
ବ୍ୟତୀପାତେ କୃତେ ଶ୍ରାଦ୍ଧେ ପୁତ୍ରୀନୋପ ବସେଦ୍‌ଗୃହୀ ।
ଇତି ବ୍ରହ୍ମପୁରାଣଂ ।

ରବି ବାସରେ ସଂକ୍ରାନ୍ତି ହେଲେ ଓ କୃଷ୍ଣୈକାଦଶୀରେ ଏବ ବ୍ୟତୀପାତ ନିମିତ୍ତ ଶ୍ରାଦ୍ଧଦିନରେ ପୁତ୍ରବାନ୍ ଗୃହସ୍ଥ ଉପବାସ କରିବେ ନାହିଁ ।

[ ବ୍ୟତୀପାତୋଯଥା ]

ଶ୍ରବଣାଶ୍ୱି ଧନିଷ୍ଠାଦ୍ରା ନାଗଦୈବତ ମସ୍ତକେ ।
ଯଦ୍ୟମା ରବି ବାରେଣ ବ୍ୟତୀପାତଃ ସ ଉଚ୍ୟତେ ।

ରବିବାରରେ ଅମାବସ୍ୟା ହୋଇ ଯଦି ସେଦିନ ଶ୍ରବଣା, ଅଶ୍ୱିନୀ ଧନିଷ୍ଠା, ଆଦ୍ରା, ଅଶ୍ଳେଷା ଓ ମୃଗଶିର୍ ଏମାନଙ୍କ ମଧ୍ୟରୁ କୌଣସି ନକ୍ଷତ୍ର ଯୋଗହୁଏ ତେବେବ୍ୟତୀପାତଯୋଗ କୁହା ଯାଏ ।

ତର୍ସୈବ ଶୟନ ବୋଧନ ମଧ୍ୟେ ପ୍ରତିପ୍ରସବମାହ ବ୍ରହ୍ମବୈବର୍ତ୍ତେ ।
ଶୟନୀ ବୋଧନୀ ମଧ୍ୟେ ଯାକୃଷ୍ଣୈକାଦଶୀ ଭବେତ୍ ।
ସୈବୋପୋଷ୍ୟା ଗୃହସ୍ଥେନ ନାନ୍ୟାକୃଷ୍ଣା କଦାଚନ ।

ଶୟନ ଓ ବୋଧନ ମଧ୍ୟରେ ଯେଉଁ ୨ କୃଷ୍ଣ ପକ୍ଷୀୟ ଏକାଦଶୀ ହୁଏ ସେଥିରେ ପୁତ୍ରବାନ୍ ଗୃହସ୍ଥ ବ୍ୟକ୍ତି ଉପବାସକରିବେ । ଅନ୍ୟ କୃଷ୍ଣ ପକ୍ଷୀୟ ଏକାଦଶୀରେ ପୁତ୍ରବାନ୍ ଗୃହସ୍ଥ ଉପବାସକରିବେ ନାହିଁ । ଆଉ ପୁତ୍ରବତୀ ସଧବାନାରୀ କୌଣସି ଉପବାସ କରିବେ ନାହିଁ । ସେଥିରେ ସ୍ୱାମୀର ଆୟୁଃ କ୍ଷୟ ହୁଏ । କିନ୍ତୁ ସ୍ୱାମୀର ଅନୁମତିନେଇ କରିପାରନ୍ତି ।

ପତ୍ୟୌ ଜୀବତି ଯାନାରୀ ଉପୋଷ୍ୟ ବ୍ରତ ମାଚରେତ୍ ।
ଆୟୁଷ୍ୟଂ ହ୍ରସୟତେ ପତ୍ୟୁଃ କୃତ୍ୱା ତାନୁଜ୍ଞୟା ବ୍ରତଂ ।
ଇତ୍ୟୁକ୍ତଃ ।

ବାୟବା ପକ୍ଷେ

ଦ୍ୱଧବା ଯା ଭବେନ୍ନାରୀ ଭୁଞ୍ଜୀତୈକାଦଶୀଦିନେ ।
ତସ୍ୟାସ୍ତୁ ସୁକୃତଂ ନଶ୍ୟେତ୍ ଭ୍ରୂଣହତ୍ୟା ଦିନେ ଦିନେ ।
ଇତି କାତ୍ୟାୟନଃ ।

ଦ୍ୱଧବାନାରୀ ଉଭୟ ପକ୍ଷ ଏକାଦଶୀ କରିବା କର୍ତ୍ତବ୍ୟ, ଯେଉଁ ଦ୍ୱଧବା ନାରୀ ଏକାଦଶୀ ନକରନ୍ତି ତାଙ୍କର ସମସ୍ତ ପୁଣ୍ୟ ନାଶହେବ ଓ ଭ୍ରୂଣହତ୍ୟା ପାତକ ହେବ ।

ବୈଷ୍ଣବ ପକ୍ଷେ

ଯଥା ଶୁକ୍ଳା ତଥା କୃଷ୍ଣା ଯଥା କୃଷ୍ଣା ତଥେ ତରା ॥
ତୁଲ୍ୟେତେ ମନ୍ୟତେ ଯସ୍ତୁ ସବୈ ବୈଷ୍ଣବ ଉଚ୍ୟତେ ।
ବ୍ରହ୍ମାଣ୍ଡ, ହେମାଦ୍ରି ଧୃତ, ତତ୍ତ୍ୱସାଗର ଃ । ·

ଯେପରି ଶୁକ୍ଳୈକାଦଶୀ, ସେହିପରି କୃଷ୍ଣୈକାଦଶୀ, ଆଉ ଯେପ୍ରକାର କୃଷ୍ଣୈକାଦଶୀ, ସେହିପ୍ରକାର ଶୁକ୍ଳୈକାଦଶୀ ଯେବ୍ୟକ୍ତି ଏହିରୂପେ ସମାନ ଜ୍ଞାନ କରନ୍ତି ସେହିବୈଷ୍ଣବ ।

ନିତ୍ୟଂ ଭକ୍ତିସମାଯୁକ୍ତୈର୍ନରୈର୍ବିଷ୍ଣୁ ପରାୟଣୈଃ ।
ପକ୍ଷେ ପକ୍ଷେ ଚ କର୍ତ୍ତବ୍ୟମେକାଦଶ୍ୟାମୁପୋଷଣଂ ।
କାଳମାଧବୀୟେ ନାରଦଃ ।

ବିଷ୍ଣୁଭକ୍ତି ପରାୟଣ ଅର୍ଥାତ୍ ବୈଷ୍ଣବମାନେ ଭକ୍ତି ଯୁକ୍ତ ହୋଇ ଶୁକ୍ଳ ଓ କୃଷ୍ଣ ପକ୍ଷର ଏକାଦଶୀ କରିବେ । ଏସ୍ଥଳରେ ଗୃହସ୍ଥ ପୁତ୍ରବାନ୍ ପ୍ରଭେଦ ନାହିଁ । କାରଣ ପ୍ରଥମ ବଚନରେ ସେମାନଙ୍କ ବୈଷ୍ଣବ ସଂଜ୍ଞାର୍ଥ ହେତୁ ଉକ୍ତ ନିୟମ ଘଟିବ ନାହିଁ ।

ତଥାଚ ଶ୍ରୀପତି ବ୍ୟବହାର ନିର୍ଣ୍ଣୟେ ।

ସ ପୁତ୍ରଶ୍ଚ ସଭାର୍ଯ୍ୟଶ୍ଚ ସଜନୈର୍ଭକ୍ତିସଂଯୁତୈଃ ।
ଏକାଦଶ୍ୟାମୁପବସେତ୍ ପକ୍ଷୟୋରୁଭୟୋରପି ॥

ବୈଷ୍ଣବ ଭକ୍ତଙ୍କର ପକ୍ଷରେ ଏକାଦଶୀ ନିତ୍ୟବ୍ରତ, ବୈଷ୍ଣବଙ୍କର ପ୍ରୀତ୍ୟର୍ଥେ ଏକାଦଶୀ ସେମାନଙ୍କର ନିତ୍ୟକର୍ତ୍ତବ୍ୟ ।

ତଦ୍‌ଯଥା -

ଶୁକ୍ଳେ ବା ଯଦି ବା କୃଷ୍ଣେ ବିଷ୍ଣୁପୂଜନ ତତ୍ପର଼ଃ ।
ଏକାଦଶ୍ୟାଂ ନଭୁଞ୍ଜୀତ ପକ୍ଷୟୋରୁଭୟୋରପି ॥
ଇତି ବ୍ୟବସ୍ଥା ନିର୍ଣ୍ଣୟଃ ।

ଯାନି କାନି ଚ ପାପାନି ବ୍ରହ୍ମହତ୍ୟାଦିକାନିଚ ।
ଅନ୍ନ ମାଶ୍ରିତ୍ୟ ତିଷ୍ଠନ୍ତି ସମ୍ପ୍ରାପ୍ତେ ହରିବାସରେ ॥
ଅଘଂ ସ କେବଲଂ ଭୁଙ୍କ୍ତେ ଯୋଭୁଙ୍କ୍ତେ ହରିବାସରେ ।
ତଦ୍ଦିନେ ସର୍ବପାପାନି ଭବନ୍ତ୍ୟନ୍ନାଶ୍ରିତାନିଚ ॥
ଇତି ଭବିଷ୍ୟପୁରାଣଂ ।

ବ୍ରହ୍ମହତ୍ୟାଦି ଯେ ସମସ୍ତ ପାପଅଛି ସେମାନେ ଏକାଦଶୀ ଦିନରେ ଅନ୍ନକୁ ଆଶ୍ରୟକରି ବାସକରନ୍ତି ଅତଏବ ଏହି ଦିନରେ ଅନ୍ନ ଭକ୍ଷଣ କଲେ ସେହି ସମସ୍ତ ପାପ ତାହାକୁ ଆଶ୍ରୟ କରନ୍ତି । ପରନ୍ତୁ ଏକାଦଶୀ ଦିନରେ ଅନ୍ନ ଭକ୍ଷଣ କରିବାର ନୁହେ । ଆଉ ଆଠ ବର୍ଷରୁ ଆରମ୍ଭ କରି ଅଶୀତି ବର୍ଷର ପର୍ଯ୍ୟନ୍ତ ଏକାଦଶୀ ଉପବାସ କରି କର୍ତ୍ତବ୍ୟ ॥ ପ୍ରମାଣଂ ଯଥା ;-

ଅଷ୍ଟାବ୍ଦାଦଧିକୋ ମର୍ତ୍ତ୍ୟୋହ୍ୟ ପୂର୍ଣ୍ଣାଶୀତି ବତ୍ସରଃ ।
ଭୁଙ୍କ୍ତେ ଯୋ ମାନବୋ ମୋହାଦେକାଦଶ୍ୟାଂ ସପାପକୃତ୍ ॥

---

ଅଥ ବୃଦ୍ଧବାଳ ବ୍ୟବସ୍ଥା ।

ପୂର୍ଣ୍ଣାପ୍ୟେକାଦଶୀ ତ୍ୟାଜ୍ୟା ଦ୍ୱିତୀୟଂ ବର୍ଦ୍ଧିତେ ଯଦି ।
ଦ୍ୱାଦଶ୍ୟାଂ ପାରଣାଲାଭେ ପୂର୍ବେଣୈବ ପରିଶୁଦ୍ଧ୍ୟତେ ॥
ଇତି ପ୍ରଚେତା ଃ ॥

ପୂର୍ଣ୍ଣ ଏକାଦଶୀ ଅର୍ଥାତ୍ ଷଷ୍ଟିଦଣ୍ଡାତ୍ମିକା ଏକାଦଶୀକୁ ପରିତ୍ୟାଗ କରିବ ଯଦି ଦ୍ୱିତୀୟଂ ଅର୍ଥାତ୍ ଦ୍ୱିତୀୟ ଦିନରେ କିଞ୍ଚିତ୍ ଏକାଦଶୀ ଥାଏ ତେବେ ପୂର୍ଣ୍ଣୈକାଦଶୀକୁ ପରିତ୍ୟାଗ କରି ଏହି ଦ୍ୱିତୀୟ ଦିନରେ ଉପବାସକରିବ । କାରଣ ଦ୍ୱାଦଶୀରେ ପାରଣା କରିବାକୁ ହୁଏ ବୋଲି । ଆଉ ଯଦି ଦ୍ୱାଦଶୀରେ ପାରଣା ଯୋଗ୍ୟ କାଳ ପାହ୍ନାନଯାଏ ଅର୍ଥାତ୍ ପୂର୍ବ ଦିନରେ ଦ ୬୦ ଣ୍ଡ ଏକାଦଶୀ ପରଦିନ ଦ ୧ ଣ୍ଡ ଉପରେ ଦ୍ୱାଦଶୀ ଓ ଗ୍ରିଶେଷେ ଦ୍ୱାଦଶୀ କ୍ଷୟହୋଇ ତ୍ରୟୋଦଶୀ ହୁଏ ଏପରିସ୍ଥଳେ ପୂର୍ଣ୍ଣାକୁ ଗ୍ରାହ୍ୟକରିବ । ଅର୍ଥାତ୍ ଦ ୬୦ ଣ୍ଡାତ୍ମିକା ଏକାଦଶୀ ଗ୍ରାହ୍ୟକରିବ । କାରଣ କି ପାରଣ ଯୋଗ୍ୟକାଳ ପ୍ରାପ୍ତହୁଏନାହିଁ । ଆଉ ଯଦି ପୂର୍ବଦିନ ଦଶମୀଯୁକ୍ତା ଏକାଦଶୀ ଆଉ ପର ଦିନ ଦ୍ୱାଦଶୀ ଯୁକ୍ତା ଏକାଦଶୀ ଅର୍ଥାତ୍ ପୂର୍ବଦିନରେ ଦ ୧୫ ଣ୍ଡ ପରେ ଏକାଦଶୀ ହୁଏ ଏବଂ ପରଦିନ ଯଦି ପାରଣା ଯୋଗ୍ୟ କାଳ ପର୍ଯ୍ୟନ୍ତ ଦ୍ୱାଦଶୀ ଥାଏ କିବା ନ ଥାଏ ତଥାପି ଦଶମୀ ଯୁକ୍ତା ଏକାଦଶୀକୁ ପରିତ୍ୟାଗକରିବ ଅର୍ଥାତ୍ ଏପ୍ରକାର ହେଲେ ଦଶମୀ ଯୁକ୍ତା ଏକାଦଶୀ କରିବ ନାହିଁ ।

ସମ୍ପୂର୍ଣ୍ଣୈକାଦଶୀ ଯତ୍ର ପ୍ରଭାତେ ପୁନରେବ ସା ।
ତତ୍ରୋତ୍ତରାଂ ଯତିଃ କୁର୍ଯ୍ୟାତ୍ ପୂର୍ବାମୁପବସେଦ୍ଗୃହୀ ॥
ସ୍କନ୍ଦ ପୁରାଣଂ ।

ଏକାଦଶୀ ପ୍ରବୃଦ୍ଧା ଚେତ୍ ଶୁକ୍ଳେ କୃଷ୍ଣେ ବିଶେଷତଃ ।
ଉତ୍ତରାନ୍ତୁ ଯତିଃ କୁର୍ଯ୍ୟାତ୍ ପୂର୍ବାମୁପବସେଦ୍ଗୃହୀ ॥
କୂର୍ମ ପୁରାଣଂ ।

ପୁନଃପ୍ରଭାତସମୟେ ଘଟିକୈକା ଯଦା ଭବେତ୍ ।
ତତ୍ରୋପବାସୋ ବିହିତୋ ବନସ୍ଥସ୍ୟ ଯତେସ୍ତଥା ॥
ଗରୁଡ଼ ପୁରାଣଂ

ଵଧବାଯ୍ୟାସ୍ତୁ ତର୍ନ୍ନୈବ ପରତୋ ଦ୍ୱାଦଶୀ ନଚେତ୍ ।
ଏକାଦଶ୍ୟାମୁପବସେତ୍ ଦ୍ୱାଦଶୀମଥବା ପୁନଃ ।
ଵମିଶ୍ରାମ୍ୟାପି କୁର୍ବୀତ ନ ଦଶମ୍ୟାଯତାଂ କ୍ୱଚତ୍ ॥
ବ୍ରହ୍ମ ପୁରାଣଂ ।

ଅନ୍ୟଚ୍ଚ ।

ଏକାଦଶୀ ଦ୍ୱାଦଶୀଚ ରାତ୍ରୀ ଶେଷେ ତ୍ରୟୋଦଶୀ ।
ତତ୍ର କ୍ରତୁ ଶତଂ ପୁଣ୍ୟଂ ତ୍ରୟୋଦଶ୍ୟାନ୍ତୁ ପାରଣଂ ॥
ଇତ ଏକାଦଶୀ ତତ୍ତ୍ୱଂ ।

ଯଦ ସୂର୍ଯ୍ୟୋଦୟର ପର ଦିନରେ ଦଶମୀପରେ ଏକାଦଶୀ ଓ ତାହାକ୍ଷୟହୋଇ ଦ୍ୱାଦଶୀହୁଏ ତେବେ ଶୁଦ୍ଧଦ୍ୱାଦଶୀରେ ଉପବାସ କର ତ୍ରୟୋଦଶୀରେ ପାରଣକରିବ, ତହିଁରେ ଶତଯଜ୍ଞର ଫଳ ଲାଭହୁଏ କନ୍ତୁ ଏରୂପ ଅତଦୁର୍ଲ୍ଲଭ । ପ୍ରମାଣଂ ;

କୁର୍ଯ୍ୟାଦଲାଭେ ସଂଯୁକ୍ତାଂ ନାଲଭେଽପି ପ୍ରବେଶିନୀଂ ।

ଯଦ ଏକାଦଶୀ ଷଷ୍ଟୀ ଦଣ୍ଡାତ୍ମିକାପରଦନ ନଥାଇ ଦ୍ୱାଦଶୀ ହୁଏ ତେବେ ଦ୍ୱାଦଶୀର ଏକପାଦ ପରତ୍ୟାଗକରି ପାରଣକରିବ । କାରଣ ଦ୍ୱାଦଶୀର ପ୍ରଥମପାଦ ଏକାଦଶୀର ତୁଲ୍ୟ । ପ୍ରମାଣଂ ;

ଦ୍ୱାଦଶ୍ୟାଃ ପ୍ରଥମଃ ପାଦୋ ହରବାସର ସଂଜ୍ଞକଃ ।
ତମତକ୍ରମ୍ୟ କୁର୍ବୀତ ପାରଣଂ ଵିଷ୍ଣୁ ତତ୍ପରଃ ॥
ଵିଷ୍ଣୁ ଧର୍ମୋତ୍ତର ଃ ।

ଏକାଦଶୀ ବ୍ରତ ଦନ୍ତ, ଏଦନମଦ୍ଧ ତହିଁରେ ଅଶୌଚାଦକର ପ୍ରତିବନ୍ଧକ ହେଲେ ସୁଦ୍ଧା ବ୍ରତଭଙ୍ଗହୁଏନାହିଁ । ପ୍ରମାଣଂ ;

ଏକାଦଶ୍ୟାଂ ନ ଭୁଞ୍ଜୀତ ପକ୍ଷୟୋରୁଭୟୋରପି ॥
ମୃତକେ ସୂତକେ ଚାପି ଅନ୍ୟସ୍ମାନ୍ନା ପ୍ୟଶୌଚକେ ॥

ସର୍ବଥା ନପରିତ୍ୟାଜ୍ୟା ଇଚ୍ଛତାଶ୍ରେୟ ଆତ୍ମନଃ ॥
ଇତି ପଦ୍ମପୁରାଣଂ ॥

ଅନ୍ୟଚ୍ଚ ।

ଯଦି ଏକାଦଶୀ ଦିନରେ ସ୍ତ୍ରୀଲୋକ ରଜସ୍ୱଳାଦି କାରଣ ବଶତଃ ଅଶୁଦ୍ଧାଥାଏ ତେବେ ସ୍ୱୟଂ ଉପବାସକରି ଅନ୍ୟଦ୍ୱାରା ପୂଜାଦି କରାଇବ ।

ତଦ୍ ଯଥା ।

ଗର୍ଭିଣୀ ସୂତକାନ୍ନଞ୍ଚ କୁମାରୀଚ ରଜସ୍ୱଳା ॥
ଯଦାଶୁଦ୍ଧା ତଦାନ୍ୟେନ କାରୟେତ୍ କ୍ରିୟତେସଦା ॥
ଅନୁକଳ୍ପୋ ନୃଣାଂ ପ୍ରୋକ୍ତଃ କ୍ଷୀଣାନାଂ ବରବର୍ଣ୍ଣିନୀ ॥
ଏକ ଭକ୍ତେନ ନକ୍ତେନ ତଥୈବା ଯାଚିତେନ ଚ ॥
ଉପବାସେନ ଦାନେନ ନୈବ ଦ୍ୱାଦଶୀକୋ ଭବେତ୍ ॥
ମାର୍କଣ୍ଡେୟ ପୁରାଣଂ

ଉପବାସାସମର୍ଥୈଽପି ଫଳ ମୂଳାଦି ଭୋଜନଂ ॥
ସକୃଦ୍ ଭୁକ୍ତ୍ୱେ ହବିଷ୍ୟାନ୍ନଂ ବିଷ୍ଣୋ ର୍ନୈବେଦ୍ୟମେ ବଚ ।
ନ ଭବେତ୍ ପ୍ରତ୍ୟବାୟୀସ ଉପବାସଫଳଂ ଲଭେତ୍ ॥
ଉପବାସାସମର୍ଥଶ୍ଚ ଏକଂ ବିପ୍ରନ୍ତୁ ଭୋଜୟେତ୍ ॥
ତନ୍ମୂଲ୍ୟନାକ ବା ଦଦ୍ୟାଦ୍ ଯଦ୍ଭୁକ୍ତ୍ୱା ଦ୍ୱିଗୁଣଂ ଭବେତ୍ ॥
ଇତି ବ୍ରହ୍ମବୈବର୍ତ୍ତ ।

ଏକାଦଶୀ ଅନୁକଳ୍ପ ଏହି ପୁରାଣାଦିରେ କହିଅଛନ୍ତି ଯେ ଉପବାସାସମର୍ଥ ବ୍ୟକ୍ତି ଯଦି ଫଳ ମୂଳ ଜଳାହାର କରେ ବା ଏକବାର ହବିଷ୍ୟ ବା ବିଷ୍ଣୁଙ୍କ ନୈବେଦ୍ୟ ଭୋଜନକରେ ତେବେ ସେ ପ୍ରତ୍ୟବାୟୀ ହେବନାହିଁ । ଆଉ ଉପବାସାଶକ୍ତ ବ୍ୟକ୍ତି ଏକ-ଜଣ ବ୍ରାହ୍ମଣ ଭୋଜନ କରାଇବ ଓ ନିଜେ ଯାହା ଆହାର କରିବ ତାହାର ମୂଲ୍ୟର ଦ୍ୱିଗୁଣ ସେହି ବ୍ରାହ୍ମଣକୁ ଦେବ । ଏସ୍ଥଳରେ

ବିଶେଷନିୟମ ଏହି ଯେ ବିଷ୍ଣୁଶୟନ, ପାର୍ଶ୍ୱପରିବର୍ତ୍ତନ ଓ ଉତ୍ଥାନ ଏକାଦଶୀରେ ଏହି ପୂର୍ବୋକ୍ତ ନିୟମ ରହିବନାହିଁ ।

ତଦ୍ୟଥା ।

ମଚ୍ଛୟନେ ମଦୂତ୍ଥାନେ ମତ୍ପାର୍ଶ୍ୱପରିବର୍ତ୍ତନେ ।
ଫଳ ମୂଳ ଜଳାହାରୀ ହୃଦ୍ଶୈଲ୍ୟଂ ସମର୍ପୟେତ୍ ।
ଇତି ଶ୍ରୀ ଭଗବଦ୍ୱାକ୍ୟଂ ।

ଶ୍ରୀ ଭଗବାନ୍ କହିଅଛନ୍ତି ଯେ ଆମ୍ଭର ଶୟନ, ଉତ୍ଥାନ ଓ ପାର୍ଶ୍ୱପରିବର୍ତ୍ତନ ଏକାଦଶୀରେ ଯେ ଫଳମୂଳ ଜଳମାତ୍ର ଆହାର କରେ ସେ ଆମ୍ଭ ହୃଦୟରେ ଶଲ୍ୟ ନିକ୍ଷେପକରେ । ଅତଏବ ସମସ୍ତଙ୍କ ପକ୍ଷରେ ଏହି ତିନିଦିନ ଉପବାସ କରି ବିଧେୟ ।

ଏକାଦଶୀ ଦିବସରେ ଷୋଡ଼ଶୋପଚାରରେ ନାରାୟଣଙ୍କର ପୂଜା କରିବ ଓ ଉପବାସ କରିବ । ଏହି ବ୍ରତକଲେ ଅନ୍ତକାଳରେ ଅକ୍ଷୟ ବୈକୁଣ୍ଠଧାମ ପ୍ରାପ୍ତହୋଇ ସେଠାରେ ଅନନ୍ତ କାଳ ବାସକରିବ ।

---

ଅଥ ଦ୍ୱାଦଶୀ

ସାଚୈକାଦଶୀ ଯୁତାଗ୍ରାହ୍ୟା ଯୁଗ୍ମାତ୍

ଯୁଗ୍ମବଚନରୁ ଅର୍ଥାତ୍ ଯୁଗ୍ମାଦର ପ୍ରଯୁକ୍ତ ଏକାଦଶୀ ଯୁକ୍ତା ଦ୍ୱାଦଶୀ ପ୍ରଶସ୍ତା ।

ବୈଶାଖେ ଶୁକ୍ଳପକ୍ଷେତୁ ବୈଷ୍ଣବୀ ଦ୍ୱାଦଶୀ ତିଥିଃ ।
ତସ୍ୟାଂଶୀତଲ ତୋୟେନ ସ୍ନାପୟେତ୍ କେଶବଂଗୁରୁଃ ।
ଇତି ନାରଦ ସଂହିତା ।

ବୈଶାଖୀୟ ଶୁକ୍ଳ ଦ୍ୱାଦଶୀକୁ ବୈଷ୍ଣବୀ ତିଥି ବା ପିପୀତକୀ-ଦ୍ୱାଦଶୀ କହି । ଅତଏବ ଏହିଦିନରେ ପିପୀତକୀ ବ୍ରତକରିବ ।

ଜ୍ୟୈଷ୍ଠମାସର ଶୁକ୍ଳା ଦ୍ୱାଦଶୀକୁ ଦଶୋରା ଦ୍ୱାଦଶୀକହି ଏହି ଦିନରେ ବିଷ୍ଣୁଙ୍କର ପୂଜାକରିବ । ଆଷାଢ଼ ଶୁକ୍ଳା ଦ୍ୱାଦଶୀ ରାତ୍ରିରେ ବିଷ୍ଣୁ ଶୟନ, ଭାଦ୍ରବ ଦ୍ୱାଦଶୀରେ ପାର୍ଶ୍ୱ ପରିବର୍ତ୍ତନ, ଓ କାର୍ତ୍ତିକ ଦ୍ୱାଦଶୀରେ ଉଠନ୍ତିଏ । ପ୍ରମାଣଂ ଯଥା ;—

ଶେତେବିଷ୍ଣୁଃ ସଦାଷାଢ଼େ ଭାଦ୍ରେଚ ପରିବର୍ତ୍ତତେ ॥
କାର୍ତ୍ତିକେ ପରିବୁଧ୍ୟେତେ ଶୁକ୍ଳପକ୍ଷେ ହରେର୍ଦ୍ଦିନେ ॥
ଇତି ମତ୍ସ୍ୟପୁରାଣଂ ॥

ଯଦ୍ୟପି ଅନୁରାଧା ନକ୍ଷତ୍ର ମିଳେ ତେବେଉତ୍ତମ, ନପାଇଲେ ସୁଦ୍ଧା ତିଥିମାହାତ୍ମ୍ୟହେତୁରୁ ରାତ୍ରିଯୋଗରେ ବିଷ୍ଣୁଙ୍କର ଶୟନ କରାଇବ ଶ୍ରବଣା ନକ୍ଷତ୍ରରେ ପାର୍ଶ୍ୱ ପରିବର୍ତ୍ତନ ଓ ରେବତୀ ନକ୍ଷତ୍ରରେ ଉତ୍ଥାନ କରାଇବ ।

ମୈତ୍ରାଦ୍ୟପାଦେ ସ୍ୱପିତୀହ ବିଷ୍ଣୁ,
ବୈଷ୍ଣବ୍ୟମଧ୍ୟେ ପରିବର୍ତ୍ତତେ ଚ ॥
ପୌଷ୍ଣାବସାନେ ଚ ସୁରାରି ହନ୍ତା,
ପ୍ରବୁଧ୍ୟତେ ମାସ ଚ ତୁଷ୍ଟୟେନ ॥ ॥
ଭବିଷ୍ୟ ନାରଦୀୟେ ॥

ଆଉ ଶୟନୋତ୍ଥାନ ବିଷୟରେ ପୂର୍ବେ କଥିତହୋଇଅଛି ଯେ ନିଶାରେ ଶୟନ ଇତ୍ୟାଦି ବିଷୟରେ ପ୍ରମାଣ ଏହି । ଯଥା;

ନିଶି ସ୍ୱାପୋ ଦିବୋତ୍ଥାନଂ ସନ୍ଧ୍ୟାୟାଂ ପରିବର୍ତ୍ତନଂ ।
ଭବିଷ୍ୟ ପୁରାଣଂ ।

ବିଷ୍ଣୁଙ୍କର ନିଶାରେ ଶୟନ, ଦିବସରେ ଉତ୍ଥାନ ଓ ସନ୍ଧ୍ୟାରେ ପାର୍ଶ୍ୱ ପରିବର୍ତ୍ତନ କରାଇବ ।

ଯଦି ଏହିସବୁ ନକ୍ଷତ୍ର ତିଥିରେ ସମ୍ୟକ୍ ଯୋଗନଥାଏ ତେବେ ପାଦଯୋଗ ହୋଇଲେହିଁ ଏହିସବୁ କର୍ମ ଅର୍ଥାତ୍ ଶୟନୋତ୍ଥା-

ନାହି କରାଇବ । ଆଉ ବିଷ୍ଣୁ କଦାପି ଦିବସରେ ଶୟନ ଓ ରାତ୍ରିରେ ଉତ୍ଥାନ ବା ପରିବର୍ତ୍ତନ କରନ୍ତୁନାହିଁ ପ୍ରମାଣଂ ଯଥା ; —

ବିଷ୍ଣୁର୍ଦ୍ଦିବା ନସ୍ୱପିତି ନରାତ୍ରୌ ପ୍ରତି ବୁଦ୍ଧ୍ୟତେ ।
ଦ୍ୱାଦଶ୍ୟାମୃକ୍ଷ ସଂଯୋଗେ ପାଦଯୋଗେ ନ କାରଣଂ ॥
ଅପ୍ରାପ୍ତ ଦ୍ୱାଦଶୀମୃକ୍ଷେ ଉତ୍ଥାନଶୟନେ ହରେଃ ।
ପାଦ ଯୋଗେନ କର୍ତ୍ତବ୍ୟେ ନାହୋରାତ୍ରଂ ବିଚିନ୍ତୟେତ୍ ॥
ଦ୍ୱାଦଶ୍ୟାଂସନ୍ଧ୍ୟସମୟେ ନକ୍ଷତ୍ରାଣାମସମ୍ଭବେ ।
* ଆଭାକା ସିତ ପକ୍ଷେଷୁ ଶୟନା ବର୍ତ୍ତନାଦିକଂ ॥

ଇତି ବରାହ ପୁରାଣ ବିଷ୍ଣୁଧର୍ମୋତ୍ତରରେ ।

କାନ୍ତ୍ୟର୍କେ ମୈତ୍ର୍ୟ ପାଦେନ ଦଶମ୍ୟାଂଶେନ ଯୋଜିତା ।
ପୌଷ୍ଣ ଶେଷେଣ କ୍ରମେନ ପ୍ରତିପଦ୍ୟ ଥଦ୍ୟୋର୍ନିଶି ॥
ରେବତ୍ୟନ୍ତୋ ଯଦାରାତ୍ରୌ ଦ୍ୱାଦଶ୍ୟାଚ ସମନ୍ୱିତଃ ।
ତଦା ପ୍ରବୁଧ୍ୟତେ ବିଷ୍ଣୁର୍ଦ୍ଦିନାନ୍ତେ ପ୍ରାପ୍ୟରେବତୀଂ ॥

ଶୟନ , ପାର୍ଶ୍ୱ ପରିବର୍ତ୍ତନ ଓ ଉତ୍ଥାନରେ ଯଦି ଦ୍ୱାଦଶୀରେ ସେହି ୨ ନକ୍ଷତ୍ର ଯୋଗନ୍ତୁଏ ନାହିଁ ତେବେ ଏକାଦଶୀ, ତ୍ରୟୋଦଶୀ , ଚତୁର୍ଦ୍ଦଶୀ , ଓ ପୂର୍ଣ୍ଣିମା ଏହି ଚାରିତିଥିର ମଧ୍ୟେ ଯେଉଁ ତିଥିରେ ନକ୍ଷତ୍ରର ପାଦ ଯୋଗନ୍ତୁଏ ସେହି ତିଥିରେ ଶୟନାଦି କରିଅନ୍ତୁଏ । ପରନ୍ତୁ ଯଦି ଏକାଦଶ୍ୟାଦି ପୂର୍ଣ୍ଣିମା ପର୍ଯ୍ୟନ୍ତ କୌଣସି ତିଥିରେ ନକ୍ଷତ୍ର ଯୋଗ ନହୁଏ ତେବେ ଦ୍ୱାଦଶୀରେ ସନ୍ଧ୍ୟାସମୟେ ଉକ୍ତକାର୍ଯ୍ୟ ସମସ୍ତ ହେବ ଆଉ ଯଦି ଦ୍ୱାଦଶୀ ଦିନ ରାତ୍ରିରେ ରେବତୀର ଅନ୍ତ୍ୟପାଦ ଯୋଗନ୍ତୁଏ ତେବେ ଦିବାର

---

* ଅଭାକା ଇହାର ଅର୍ଥ , ଅଷାଢ଼ , ଭାଦ୍ର ଓ କାର୍ତ୍ତିକ ଏସ୍ଥଳେ ଆଦ୍ୟାକ୍ଷର ଗୃହୀତ ହୋଇ ଅଛି ।

ତୃତୀୟ ଭାଗରେ ଉତ୍ଥାନ ହେବ ।

ଯାଃ କାଶ୍ଚିତ୍ତିଥୟଃ ପ୍ରୋକ୍ତାଃ ପୂର୍ଣ୍ଣା ନକ୍ଷତ୍ର ଯୋଗତଃ ।
ତାସ୍ୱେବତଦ୍ବ୍ରତଂ କୁର୍ଯ୍ୟାତ୍ ଶ୍ରବଣ ଦ୍ୱାଦଶୀଂ ବିନା ॥
ଇତି ନାରଦଃ ।

ଏକାଦଶୀ ଯଦା ତସ୍ମାତ୍ ଶ୍ରବଣେନ ସମନ୍ୱିତା ।
ବିଜୟାସା ତିଥିଃ ପ୍ରୋକ୍ତା ଭକ୍ତାନାଂ ବିଜୟ ପ୍ରଦା ॥
ତିଥିନକ୍ଷତ୍ର ସଂଯୋଗେ ଉପବାସୋ ଯଥା ଭବେତ୍ ।
ତାବଦେବ ନଭୋକ୍ତବ୍ୟଂ ଯାବନ୍ନୈକସ୍ୟ ସଂକ୍ଷୟଃ ।
ବିଶେଷେଣ ମହୀପାଳ ଶ୍ରବଣଂ ବର୍ଦ୍ଧିତେ ଯଦି ।
ତିଥି କ୍ଷୟେଣ ଭୋକ୍ତବ୍ୟଂ ଦ୍ୱାଦଶୀଂ ନୈବ ଲଙ୍ଘୟେତ୍ ॥
ଇତି ଭବିଷ୍ୟ ପୁରାଣଂ ।

ଭାଦ୍ରବ ଶୁକ୍ଳପକ୍ଷୀୟ ଦ୍ୱାଦଶୀରେ ଯଦ୍ୟପି ଶ୍ରବଣା ନକ୍ଷତ୍ର ଯୋଗହୁଏ ତେବେ ସେହି ତିଥିକି ଶ୍ରବଣ ଦ୍ୱାଦଶୀ ଓ ବିଜୟାଦ୍ୱାଦଶୀ ସୁଦ୍ଧା କହି ଏଇଦିନ ଉପବାସ ଓ ବିଷ୍ଣୁ ପୂଜାର ମହାଫଳ ଯଦି ଏହି ନକ୍ଷତ୍ର ଏକାଦଶୀରେ ଯୁକ୍ତହୁଏ ତେବେ ଏକାଦଶୀର ଉପବାସ-ରେ ଦ୍ୱାଦଶୀ ଉପବାସର ଫଳ ସିଦ୍ଧ ହେବ । କାରଣ ଦ୍ୱାଦଶୀ ଠାରୁ ଏକାଦଶୀର କାନ୍ୟଟ୍ୱଅଛି । ଆଉ ଯଦି ଏକାଦଶୀରେ ଯୋଗ ନହୋଇ ଦ୍ୱାଦଶୀରେ ଯୋଗହୁଏ ତେବେ ଏକାଦଶୀ ଓ ଦ୍ୱାଦଶୀ ଦୁଇ ଦିନରେ ଉପବାସ ହେବ । ଶ୍ରବଣା ନକ୍ଷତ୍ରର ଅବସାନରେ ପାରଣ କରିବ । ଅଗ୍ରହାୟଣ ମାସର ଶୁକ୍ଳପକ୍ଷୀୟ ଦ୍ୱା-ଦଶୀକୁ ଅଖଣ୍ଡା ଦ୍ୱାଦଶୀ କହି ।

ଫାଲ୍‌ଗୁନେ ଶୁକ୍ଳପକ୍ଷସ୍ୟ ପୁଷ୍ୟର୍କ୍ଷେ ଦ୍ୱାଦଶୀ ଯଦି ।
ଗୋବିନ୍ଦ ଦ୍ୱାଦଶୀ ନାମ ମହାପାତକନାଶିନୀ ॥

ଫାଲ୍‌ଗୁନ ମାସର ଶୁକ୍ଳପକ୍ଷୀୟ ଦ୍ୱାଦଶୀରେ ପୁଷ୍ୟା ନକ୍ଷତ୍ର

ଯୋଗ ହେଲେ ଗୋବିନ୍ଦ ଦ୍ୱାଦଶୀ କହି । ତହିଁରେ ଗଙ୍ଗା ସ୍ନାନ କଲେ ମହାଫଳ ହୁଏ । ଗଙ୍ଗାସ୍ନାନ କରିବାର ମନ୍ତ୍ର ଏହି ଯଥା ; —

ମହାପାତକସଞ୍ଜ୍ଞାନି ଯାନି ପାପାନି ସନ୍ତିମେ ।
ଗୋବିନ୍ଦଦ୍ୱାଦଶୀଂ ପ୍ରାପ୍ୟ ତାନିମେ ହର ଜାହ୍ନବି ॥

---

ଅଥ ତ୍ରୟୋଦଶୀ

ଯାତ ଶୁକ୍ଳା ଦ୍ୱାଦଶୀ ଯୁକ୍ତାଗ୍ରାହ୍ୟା କୃଷ୍ଣା ତୁ ପରଯୁକ୍ତା ।

ଶୁକ୍ଳା ତ୍ରୟୋଦଶୀ ଦ୍ୱାଦଶୀଯୁକ୍ତା ଓ କୃଷ୍ଣା ତ୍ରୟୋଦଶୀ ଚତୁର୍ଦ୍ଦଶୀ ଯୁକ୍ତା ପ୍ରଶସ୍ତ । ପ୍ରମାଣଂ ଯଥା ; —

ତ୍ରୟୋଦଶୀଚ କର୍ତ୍ତବ୍ୟା ଦ୍ୱାଦଶୀ ସହିତା ହରେ ।
ଇତି ବ୍ରହ୍ମବୈବର୍ତ୍ତେ ।
ଷଷ୍ଠ୍ୟଷ୍ଟମ୍ୟପ୍ୟମାବସ୍ୟା ତଥା ଚୈବତ୍ରୟୋଦଶୀ ।
ଏତାଃ ପରଯୁତାଃ ଗ୍ରାହ୍ୟାଃ ପରାଃପୂର୍ବେଣ ସଂଯୁତାଃ ॥
ଇତିନିଗମଃ ।

ପୂର୍ବବଚନରେ ଶୁକ୍ଳ ପକ୍ଷବିଷୟରେ ଅର୍ଥାତ୍ ଶୁକ୍ଳ ପକ୍ଷୀୟ ତ୍ରୟୋଦଶୀ ଦ୍ୱାଦଶୀଯୁକ୍ତ ; ଏବଂ ପରବଚନରେ ଷଷ୍ଠୀ, ଅଷ୍ଟମୀ ଅମାବସ୍ୟା ଓ କୃଷ୍ଣା ତ୍ରୟୋଦଶୀ ଏମାନେ ପରଯୁକ୍ତା ପ୍ରଶସ୍ତ ଏହି ବିଷୟ ଲିଖିତହେବ ।

ପ୍ରୌଷ୍ଠ ପଦ୍ୟାମସିତାୟାଂ ମଘାଯୁକ୍ତା ତ୍ରୟୋଦଶୀଂ ।
ପ୍ରାପ୍ୟ ଶ୍ରାଦ୍ଧଂ ହିକର୍ତ୍ତବ୍ୟଂ ମଧୁନା ପାୟସେନଚ ॥
ଇତି ଶଙ୍ଖଃ ।

ଭାଦ୍ରବମାସର କୃଷ୍ଣା ତ୍ରୟୋଦଶୀରେ ଯଦି ମଘାନକ୍ଷତ୍ରଯୋଗ-ଥାଏ ତେବେ ମଧୁ ଓ ପାୟସଦ୍ୱାରା ପିତୃଗଣଙ୍କର ଶ୍ରାଦ୍ଧକରିବ ।

ଏତଦ୍ବିଷୟେ ଆହ୍ନିକସୁଧା ପ୍ରମାଣଅଛି । ଯଥା; —

ଯତ୍କିଞ୍ଚିନ୍ମଧୁନା ମିଶ୍ରଂ ପ୍ରଦଦ୍ୟାତ୍ତୁ ତ୍ରୟୋଦଶୀଂ ।
ତଦପ୍ୟକ୍ଷୟମେବସ୍ୟା ଦ୍ବର୍ଷାସୁଚ ମଘାସୁଚ ॥
ଇତି ମନୁଃ ।

ପ୍ରୌଷ୍ଠପଦ୍ୟାମତୀତାୟାଂ ତଥାକୃଷ୍ଣ ତ୍ରୟୋଦଶୀଂ ।
ଏତାଂସ୍ତୁ ଶ୍ରାଦ୍ଧକାଲାନ୍‌ବୈ ନିତ୍ୟାନାହପ୍ରଜାପତିଃ ॥
ଇତି ବିଷ୍ଣୁଧର୍ମୋତ୍ତରେ ।

ଏସ୍ଥଳରେ ବିବେଚନା କରିଦେଖ ଶଙ୍ଖ ବଚନରେ ମଧୁ ଓ ପାୟସ ଦ୍ୱାରା, ମନୁ ବଚନରେ ଯତ୍କିଞ୍ଚିତ୍ ମଧୁଦ୍ୱାରା ଓ ବିଷ୍ଣୁଧର୍ମୋତ୍ତରରେ ଉକ୍ତ ଶ୍ରାଦ୍ଧ ନିତ୍ୟବୋଲି ଅଛନ୍ତି । କିନ୍ତୁ ଏକ୍ଷଣି କେବଳ ମଧୁ, ବା ମଧୁ ଓ ପାୟସଦ୍ୱାରା କରିବ ଏହିପରେହି ତଜ୍ଜନନିମିତ୍ତ ବିଷ୍ଣୁ ଧର୍ମୋତ୍ତର ଓ ଶାତାତପ ଲିଖିତ ବଚନ ଦ୍ୱୟ ନିମ୍ନେ ଲିଖିତ ହୋଇଅଛି । ଯଥା; —

ପିତରଃ ସ୍ପୃହୟନ୍ତ୍ୟନ୍ନ ମଷ୍ଟକାସୁ ମଘାସୁଚ ।
ତସ୍ମାଦ୍ଦଦ୍ୟାତ୍ସଦୋଦ୍ୟୁକ୍ତୋ ବିଦ୍ୱତ୍ସୁ ବ୍ରାହ୍ମଣେଷୁଚ ॥
ଇତି ଶାତାତପଃ

ମଘାଯୁକ୍ତା ଚ ତତ୍ରାପି ଶସ୍ତା ରାଜଂ ତ୍ରୟୋଦଶୀ ।
ତଦକ୍ଷୟଂ ଭବେଚ୍ଛ୍ରାଦ୍ଧଂ ମଧୁନା ପାୟସେନଚ ॥
ଇତି ବିଷ୍ଣୁଧର୍ମୋତ୍ତରେ ।

ଏସ୍ଥଳେ ପ୍ରଥମୋକ୍ତ ବଚନରେ ବ୍ରାହ୍ମଣ ପକ୍ଷେ ଅନ୍ନଦେଇ ମଘାଷ୍ଟକାଦି ଯାବତୀୟ ଅଷ୍ଟକାଶ୍ରାଦ୍ଧ କରିବାକୁ ଓ ପରବଚରେ ମଧୁ ଓ ପାୟସଦ୍ୱାରା ଶ୍ରାଦ୍ଧ କରିବାକୁ କହିଲେ ।

ଆହ୍ନିକସୁଧା ସ୍ମାର୍ତ୍ତଭଟ୍ଟାଚାର୍ଯ୍ୟ ଏହିସ୍ଥଳରେ ( ତତ୍ରାଶ୍ୱିନସ୍ୟ କୃଷ୍ଣପକ୍ଷେ ଅବଯତ୍ ଶ୍ରାଦ୍ଧଂ ତନ୍ମଧୁଯୋଗେନ ପାୟସଯୋଗେନ ବା

କ୍ଷୟୀଂ ଭବେତ୍ ) ଏହି ରୂପ କହିଅଛନ୍ତି । ଆଉ ସ୍ମାର୍ତ୍ତ ଭଟ୍ଟାଚାର୍ଯ୍ୟ ମନୁବଚନ ସ୍ଥଳରେ ( ଅତୋ ନ ନିର୍ମୁଲଂ ଶୂଦ୍ରସ୍ୟାପ୍ୟଧିକାରଃ ) ଏହିରୂପ କହିଅଛନ୍ତି ।

ଅନିବିଷଯ୍ୟେ ଗଜଚ୍ଛାୟାଯୋଗେ ଅଧିକଫଳଂ ।
କୃଷ୍ଣପକ୍ଷେ ନ୍ତ୍ରୟୋଦଶ୍ୟାଂ ମଘାସ୍ୱିନ୍ଦୁଃକରେ ରବୌଃ ।
ଯଦାତଦା ଗଜଚ୍ଛାୟା ଶ୍ରାଦ୍ଧେ ପୁଣ୍ୟୈ ରବାପ୍ୟତେ ।
ଇତି କୃତ୍ୟଚନ୍ଦ୍ରା ମଣିସ୍ମୃତିଃ ।

ଆଶ୍ୱିନ ମାସର ଦଶମଦିନ ପର୍ଯ୍ୟନ୍ତ ହସ୍ତାନକ୍ଷତ୍ରର ଅଧିକାର ଅର୍ଥାତ୍ ଦଶଦିନପର୍ଯ୍ୟନ୍ତ ହସ୍ତାନକ୍ଷତ୍ରରେ ସୂର୍ଯ୍ୟ ଥାନ୍ତି ତହିଁରେ ଯଦି ମଘାନକ୍ଷତ୍ର ଯୁକ୍ତ କୃଷ୍ଣା ତ୍ରୟୋଦଶୀ ହୁଏ ତେବେତାକୁ ଗଜ-ଛାୟା ଯୋଗବୋଲି, ଏବଂ ତହିଁରେ ଉକ୍ତ ଶ୍ରାଦ୍ଧ କଲେ ପୂର୍ବାପେକ୍ଷା ଫଳାଧିକ୍ୟ ହୁଏ । ଏଥିରେ ବିଭକ୍ତ ଅବିଭକ୍ତ ପ୍ରଭେଦନାହିଁ ଅର୍ଥାତ୍ ଜ୍ୟେଷ୍ଠ କନିଷ୍ଠ ସମସ୍ତେ ଏହିଶ୍ରାଦ୍ଧ କରିପାରନ୍ତି ଯେପରି ବାର୍ଷିକ ଏକୋଦ୍ଦିଷ୍ଟ ଶ୍ରାଦ୍ଧରେ ଜ୍ୟେଷ୍ଠ କନିଷ୍ଠର ଭେଦନାହିଁ ଏଥିରେ ମଧ୍ୟ ସେହିପ୍ରକାର । ପ୍ରମାଣଂ ଯଥା; —

ବିଭକ୍ତା ଅବିଭକ୍ତା ବା କୁର୍ଯ୍ୟୁଃଶ୍ରାଦ୍ଧମଦୈବିକଂ ।
ମଘାସୁଚ ତଥାନ୍ୟନ୍ତ୍ର ନାଧିକାରଃ ପୃଥଗ୍ଦିନା ।
ଇତି କୃତ୍ୟଚନ୍ଦ୍ରା ମଣିସ୍ମୃତିଃ ।

ଏହିଶ୍ରାଦ୍ଧରେ ପୁତ୍ରବାନ୍ ବ୍ୟକ୍ତିର ପିଣ୍ଡପ୍ରଦାନ ନିଷେଧ କରିଅ-ଛନ୍ତି ଅର୍ଥାତ୍ ପୁତ୍ରବାନ୍ ବ୍ୟକ୍ତି ପିଣ୍ଡଦାନ କରିବେନାହିଁ ।

ଚ୍ୟୁକ୍ଷେ ପିଣ୍ଡପ୍ରଦାନନ୍ତୁ ଜ୍ୟେଷ୍ଠପୁତ୍ରୀ ବିବର୍ଜୟେତ୍ ।
ଇତି ଦେବୀପୁରାଣଂ ।

ପିଣ୍ଡନିର୍ବାପରହିତଂ ଯତ୍ ଶ୍ରାଦ୍ଧଂ ବିଧୀୟତେ ॥
ସ୍ୱଧାବାଚନଲୋପୋ ନ ବିକିରସ୍ତୁ ନଲୁପ୍ୟତେ ।

ଯେଉଁଶ୍ରାଦ୍ଧରେ ପିଣ୍ଡଦାନ ନିଷେଧ ସେହିସ୍ଥଳେ ସ୍ୱଧାବାଚନ ଅର୍ଥାତ୍ ( ସ୍ୱଧାଂ ବାଚୟିଷ୍ୟେ ) ଏହିମନ୍ତ୍ର ପାଠପୂର୍ବକ ପବିତ୍ର ମୋଚନ କରିବନାହିଁ କିନ୍ତୁ ଅଗ୍ନି ଦଗ୍ଧାର ପିଣ୍ଡଦାନ କରିବ ।

ବାରୁଣେନ ସମାଯୁକ୍ତା ମଧୌକୃଷ୍ଣା ତ୍ରୟୋଦଶୀ ॥
ଗଙ୍ଗାୟାଂ ଯଦି ଲଭ୍ୟେତ ସୂର୍ଯ୍ୟଗ୍ରହଣ ଶତୈଃସମା ॥
ଶନିବାରସମାଯୁକ୍ତା ସାମହାବାରୁଣୀ ସ୍ମୃତା ।
ଗଙ୍ଗାୟାଂ ଯଦି ଲଭ୍ୟେତ କୋଟିସୂର୍ଯ୍ୟଗ୍ରହୈଃସମା ।
ଶୁଭଯୋଗସମାଯୁକ୍ତା ଶନୌ ଶତଭିଷାଯଦି ।
ମହାମହେତି ବିଖ୍ୟାତା ତ୍ରିକୋଟି କୁଲମୁଦ୍ଧରେତ୍ ।
ଇତି ସ୍କନ୍ଦପୁରାଣଂ ।

ଚୈତ୍ରମାସରେ ଶତଭିଷାନକ୍ଷତ୍ର ଯୁକ୍ତା କୃଷ୍ଣା ତ୍ରୟୋଦଶୀକୁ ବାରୁଣୀ କହନ୍ତି । ତହିଁରେ ଗଙ୍ଗାସ୍ନାନ କଲେ ଶତସୂର୍ଯ୍ୟ ଗ୍ରହଣ କାଳୀନ ଗଙ୍ଗାସ୍ନାନର ଫଳପ୍ରାପ୍ତହୁଏ । ଯଦିତହିଁରେ ଅର୍ଥାତ୍ ଉକ୍ତ ବାରୁଣୀରେ ଶନିବାରଯୋଗପାଏ ତେବେ ତାହାକୁ ମହାବାରୁଣୀ କହନ୍ତି । ତହିଁରେ ସ୍ନାନକଲେ କୋଟିସୂର୍ଯ୍ୟ ଗ୍ରହଣ କାଳୀନ ସ୍ନାନଫଳ ଲଭହୁଏ । ଅତଏବ ଶନିବାରରେ ଶତଭିଷାନକ୍ଷତ୍ର ଶୁଭଯୋଗସହିତ ସଂଯୁକ୍ତହୋଇ ପୂର୍ବୋକ୍ତ ବାରୁଣୀହୁଏ ତେବେ ତାହାକୁ ମହା ୨ ବାରୁଣୀକହନ୍ତି । ତହିଁରେ ଗଙ୍ଗା ସ୍ନାନକଲେ ତିନିକୋଟି କୁଳଉଦ୍ଧାର ହୁଅନ୍ତି । ଏ ସ୍ଥଳରେ ଫାଲ୍‌ଗୁନର ମୁଖ୍ୟଚନ୍ଦ୍ର ଓ ଚୈତ୍ରର ଗୌଣଚନ୍ଦ୍ର ସ୍ନାନର ସଙ୍କଳ୍ପ ସମୟରେ ଚୈତ୍ରମାସର ଉଲ୍ଲେଖ କରିବ । ପଥବାସୀ ଲୋକ ବାରୁଣୀରେ ସ୍ନାନକରିବେନାହିଁ ଏବଂ ସାମାନ୍ୟ ଶତଭିଷା ଅର୍ଥାତ୍ ପୂର୍ବୋକ୍ତ ପ୍ରକାର ଯୋଗାଦି ଅପ୍ରାପ୍ତେ ଯେ ଶତଭିଷା ତହିଁରେ ସୁଦ୍ଧା ସ୍ନାନକରିବେନାହିଁ ପ୍ରମାଣଂ ଯଥା—

ସ୍ନାନଂକୁର୍ବନ୍ତି ଯାନାର୍ଯ୍ୟ ଶ୍ଚନ୍ଦ୍ରେ ଶତଭିଷାଂ ଗତେ ।
ସପ୍ତଜନ୍ମ ଭବେୟୁସ୍ତା ଅଥବା ଦୁର୍ଭଗା ଧ୍ରୁବମିତ ।
ବଶିଷ୍ଠ ନାରଦୌ ।

ଶତଭିଷା ନକ୍ଷତ୍ର ଯୁକ୍ତା ଚନ୍ଦ୍ରରେ ଯେଉଁ ସ୍ତ୍ରୀ ସ୍ନାନକରେ ସେ-ମାନଙ୍କ୍ଷ ସପ୍ତଜନ୍ମ ଅଥବା ଓ ଦୁର୍ଭଗା ହୁଏ । ଏଥିନିମିତ୍ତେ ଶାସ୍ତ୍ରପ୍ରାପ୍ତ ସ୍ନାନର ପ୍ରତିବେଧସ୍ନାନ କରିପାରେ ।

ବାରୁଣ୍ୟୈ ଚ ସନ୍ଧ୍ୟାୟାଂ ଗଙ୍ଗାୟାଂ ଚ ପ୍ରସଙ୍ଗତଃ ।
ସ୍ନା ତ୍ୱାଶ୍ୱମେଧଜଂ ପୁଣ୍ୟଂ ଗୃହେଽପ୍ୟଦ୍ଧୃତ ତଜ୍ଜଳୈଃ ॥
ଇତି ବ୍ରହ୍ମାଣ୍ଡ ପୁରାଣେ ଗନ୍ଧର୍ବ ବାକ୍ୟଂ ।

ବାରୁଣୀ ସ୍ନାନରେ ବାରୁଣ ସନ୍ଧ୍ୟାର ଅପେକ୍ଷା ନାହିଁ । ଅର୍ଥାତ୍ କି ଦିବା କି ରାତ୍ର କି ସନ୍ଧ୍ୟା ଯେତେବେଳେ ତଥି ନକ୍ଷତ୍ରର ସମା-ଗମହେବ ତେତେ ବେଳେ ସ୍ନାନକରିବ । ଗୃହସ୍ଥିତ ଗଙ୍ଗାଜଳରେ ସ୍ନାନକଲେ ସୁଦ୍ଧା ଅଶ୍ୱମେଧର ଫଳପ୍ରାପ୍ତ ହୁଏ । ଚୈତ୍ରମାସର ତ୍ରୟୋଦଶୀରେ ମଦନ ପୂଜାକରିବାକୁ ହୁଏ । ପ୍ରମାଣଂ ଯଥା ;—

ଚୈତ୍ର ଶୁକ୍ଳ ତ୍ରୟୋଦଶ୍ୟାଂ ମଦନଂ ମଦନାତ୍ମକଂ ।
କୃତ୍ୱାସଂପୂଜ୍ୟ ଅସ୍ମିବତ୍ ବୀଜୟେତ୍ ବ୍ୟଜନେନ ତୁ ॥
ଏବଂ ଯଃ କୁରୁତେପୂଜାଂ ମଦନସ୍ୟ ମହାତ୍ମନଃ ।
ଭବନ୍ତି ନାପଦସ୍ତସ୍ୟ ତସ୍ମିନ୍ନବ୍ଦେକଦାଚନ ॥
ଇତି ଭବିଷ୍ୟ ପୁରାଣଂ ।

ଚୈତ୍ର ମାସର ଶୁକ୍ଳା ତ୍ରୟୋଦଶୀରେ ଯେ ମଦନ ପୂଜା କରିବ୍ୟ-ଜନକରେ ତାହାର ସମ୍ବତ୍ସର କୌଣସି ଆପଦ୍ଜାତ ହୁଏନାହିଁ ।

---

ଅଥ ଚତୁର୍ଦ୍ଦଶୀ ।

ଯାଚ ଶୁକ୍ଳା ପୂର୍ଣ୍ଣିମାଯୁତା ଗ୍ରାହ୍ୟା ଯୁଗ୍ମାତ୍ ।

କୃଷ୍ଣା ତୁ ପୂର୍ବଯୁତା ଗ୍ରାହ୍ୟା ॥
ଇତି ସ୍ମାର୍ତ୍ତଃ ।

ଶୁକ୍ଳା ଚତୁର୍ଦ୍ଦଶୀ ପୂର୍ଣ୍ଣମାସ୍ୟୁକ୍ତା ଓ କୃଷ୍ଣାଚତୁର୍ଦ୍ଦଶୀ ତ୍ରୟୋଦଶୀ ଯୁକ୍ତା ଗ୍ରହଣୀୟା ।

କୃଷ୍ଣ ପକ୍ଷେଽଷ୍ଟମୀଚୈବ କୃଷ୍ଣ ପକ୍ଷେ ଚତୁର୍ଦ୍ଦଶୀ ।
ଇତି ନିଗମଃ ।

ପୂର୍ବବିଦ୍ଧାଚ କର୍ତ୍ତବ୍ୟା ପରବିଦ୍ଧା ନକୁତ୍ରଚିତ୍ ।
ଉପବାସାଦି କାର୍ଯ୍ୟେଷୁ ଏଷଧର୍ମଃ ସନାତନଃ ।

କୃଷ୍ଣପକ୍ଷର ଅଷ୍ଟମୀ ଏବଂ ଚତୁର୍ଦ୍ଦଶୀ ଉପବାସାଦି କାର୍ଯ୍ୟରେ ପର ବିଦ୍ଧା ତ୍ୟାଗକରି ପୂର୍ବବିଦ୍ଧାରେ କରିବ । ଜ୍ୟେଷ୍ଠର କୃଷ୍ଣ ଚତୁର୍ଦ୍ଦଶୀର ନାମ ସାବିତ୍ରୀ ଚତୁର୍ଦ୍ଦଶୀ । ପ୍ରମାଣଂ ଯଥା;-

ମେଷେବା ବୃଷଭେ ବାପି ସାବିତ୍ରୀଂ ତାଂବିନିର୍ଦ୍ଦିଶେତ୍ ।
ଇତି ପରାଶରଃ ।

ଜ୍ୟୈଷ୍ଠେମାସି ଚତୁର୍ଦ୍ଦଶ୍ୟାଂ ସାବିତ୍ରୀ ବ୍ରତମୁତ୍ତମଂ ।
ଅବୈଧବ୍ୟାୟ କୁର୍ବନ୍ତି ସ୍ତ୍ରିୟଃ ଶ୍ରଦ୍ଧା ସମନ୍ୱିତାଃ ।
ଇତି ଶଙ୍କମାର୍ତ୍ତଣ୍ଡ କୃତ୍ୟ ଚନ୍ଦ୍ରା ମଣ୍ୟୋଃ ।

ଜ୍ୟୈଷ୍ଠମାସର କୃଷ୍ଣା ଚତୁର୍ଦ୍ଦଶୀରେ ଅବୈଧବ୍ୟ କାମନା ନିମିତ୍ତ ସ୍ତ୍ରୀ ସକଳ ଶ୍ରଦ୍ଧା ଓ ଭକ୍ତି ଦ୍ୱାରା ସାବିତ୍ରୀ ବ୍ରତକରିବେ । ଏହିବ୍ରତ ଅନନ୍ତ ଚତୁର୍ଦ୍ଦଶୀ ତୁଲ୍ୟ କରିବେ ।

ପରନ୍ତୁ ସାବିତ୍ରୀବ୍ରତ ବିଦ୍ଧାକର୍ତ୍ତବ୍ୟ । ଯଦି ଦୁଇଦିନରେ ବ୍ରତ କାଳ ମିଳେ ତେବେ ପରଦିନରେ ବ୍ରତକରିବ ଆଉ ଯଦି ଉଭୟ ଦିନରେ ପ୍ରଦୋଷସମୟରେ ଚତୁର୍ଦ୍ଦଶୀ ଲାଭନହୁଏ ତେବେ ପରଦି-ନରେ ଦିବସରେ ବ୍ରତ କରିବ ପ୍ରମାଣ ନିମ୍ନ ଲିଖିତ ହୋଇ ଅଛି ବ୍ରତର କାଳ ପ୍ରଦୋଷରେ ଅର୍ଥାତ୍ ରଜନୀ ମୁଖ ସମୟରେ କରିବ ।

ପରନ୍ତୁ ସାବିତ୍ରୀବ୍ରତ ପରବଦ୍ଧାକର୍ତ୍ତବ୍ୟ ଯଥା;-
ଚତୁର୍ଦ୍ଦଶ୍ୟାମମାବସ୍ୟା ଯଦାଭବତ ନାରଦ ।
ଉପୋଷ୍ୟା ପୂଜନୀୟାସା ଚତୁର୍ଦ୍ଦଶ୍ୟାଂ ବିଧାନତଃ ।
ଇତି ଜ୍ୟୋତିଷେ ।
ଭାଦ୍ରେ ମାସ୍ୟ ସିତେପକ୍ଷେ ଘୋରାଖ୍ୟାନ ଚତୁର୍ଦ୍ଦଶୀ ।
ତାମୁପୋଷ୍ୟ ନରେ୍ୟାତି ଶିବଲୋକ ମନାମୟଂ ।
ଇତି ଭବିଷ୍ୟୋତ୍ତରେ ।

ଭାଦ୍ରବମାସର କୃଷ୍ଣ ପକ୍ଷୀୟ ଚତୁର୍ଦ୍ଦଶୀକୁ ଅଘୋର୍ ଚତୁର୍ଦ୍ଦଶୀ-କହ୍ନ । ତହିଁରେ ଶିବପୂଜା ଓ ଉପବାସକଲେ ଅକ୍ଷୟ ଶିବଲୋକ ପ୍ରାପ୍ତିହୁଏ ।

ଅନନ୍ତବ୍ରତମେତଦ୍ଧି ସର୍ବପାପହରଂ ଶୁଭଂ ।
ସର୍ବକାମ ପ୍ରଦଂନୃଣାଂ ସ୍ତ୍ରୀଣାଞ୍ଚୈବ ଯୁଧିଷ୍ଠିର ॥
ତଥା ଶୁକ୍ଳଚତୁର୍ଦ୍ଦଶ୍ୟାଂ ମାସିଭାଦ୍ରପଦେ ଭବେତ୍ ।
ତଥା ନୁଷ୍ଠାନ ମାତ୍ରେଣ ସର୍ବପାପଂ ବ୍ୟପୋହତି ॥
ଇତି ଭବିଷ୍ୟପୁରାଣଂ ।

ଭାଦ୍ରବ ମାସର ଶୁକ୍ଳାଚତୁର୍ଦ୍ଦଶୀକୁ ଅନନ୍ତଚତୁର୍ଦ୍ଦଶୀ କହନ୍ତି ସେହି ଅନନ୍ତଚତୁର୍ଦ୍ଦଶୀରେ ବ୍ରତକଲେ ସର୍ବକାମ ଓ ସର୍ବଫଳ ଲାଭହୁଏ । ଏହି ଅନନ୍ତବ୍ରତାର୍ଥି ପୂଜା ହୋମାଦି କରିବ । ପୂର୍ବାହ୍ନକାଳରେ କରି ନପାରିଲେ ମଧ୍ୟାହ୍ନକାଳରେ କଲେ ମୁଦ୍ଧା ବ୍ରତ ସିଦ୍ଧହେବ । ପ୍ରମାଣଂ ଯଥା ; —

ମଧ୍ୟାହ୍ନେ ଭୋଜ୍ୟବେଳାୟାଂ ସମୁତ୍ତୀର୍ଯ୍ୟ ସରିତ୍ତଟେ ।
ଦଦର୍ଶଶୀଲା ସା ସ୍ତ୍ରୀଣାଂ ସମୂହଂ ରକ୍ତ ବାସସାଂ ॥
ଚତୁର୍ଦ୍ଦଶ୍ୟାମର୍ଚ୍ଚୟନ୍ତଂ ଭକ୍ତ୍ୟାଦେବଂ ପୃଥକ୍ ପୃଥକ୍ ।
ଇତି ଜ୍ୟୋତିଷେ ।

ଉକ୍ତ ଚତୁର୍ଦ୍ଦଶୀରେ ମଧ୍ୟାହ୍ନବେଳାରେ ସ୍ତ୍ରୀ ସକ୍ଳ ରକ୍ତ ବସ୍ତ୍ର ପରିଧାନ କରି ନଦୀ ତଟରେ ଶ୍ରଦ୍ଧା ଭକ୍ତି ଦ୍ୱାରା ପୃଥକ୍ ରୂପେ ଅନନ୍ତରୂପୀ ଭଗବାନଙ୍କର ଅର୍ଚ୍ଚନା କରିବେ ଏବଂ ଅର୍ଚ୍ଚନାର ପ୍ରକରଣ ଏହିପରି ଏକ କଲଶ ପରିପୂର୍ଣ୍ଣ ଜଳ ଓ ଚତୁର୍ଦ୍ଦଶ ସଙ୍ଖ୍ୟକ ପୁଷ୍ପ ଓ ଫଳ ନୈବେଦ୍ୟାଦିଦ୍ୱାରା ଉକ୍ତ ଦେବଙ୍କର ଅର୍ଚ୍ଚନା କରିବେ ଆଉ ଉକ୍ତ କଲଶ ଉତ୍ସର୍ଗ କରିବେ । ଆଉ ଯବ ବା ଗୋଧୂମ ଦ୍ୱାରା ପିଷ୍ଟକ ଦ୍ରବ୍ୟ ପ୍ରସ୍ତୁତ କରଣାନନ୍ତର ଘୃତପକ୍ୱ କରି, ଏକଗୋଟି ଅର୍ପଣ କରି ଅନ୍ୟ ଏକଗୋଟି ସ୍ୱୟଂ ଭକ୍ଷଣ କରିବେ ଆଉ ଚତୁର୍ଦ୍ଦଶ ସଂଖ୍ୟକ ସୂତ୍ର ପ୍ରସ୍ତୁତ ଓ ହରିଦ୍ରା ଦ୍ୱାରା ଅଭିଷିକ୍ତ କରି ପୂଜା କରଣାନନ୍ତର ସ୍ୱହସ୍ତରେ ବନ୍ଧ କରିବେ । କାରଣ ଅନନ୍ତ ସମୁଦ୍ରରେ ମଗ୍ନହେଲେ ଉଦ୍ଧାର ଦେବା ନିମିତ୍ତ ସେହି ସୂତ୍ର ଧାରଣ କରିବାକୁ ହୁଏ । ତତ୍ପରେ ପୂଜା ହୋମାଦିକର ସ୍ତବାଦି ପାଠ କରିବେ ଶ୍ଳୋକର ବାହୁଲ୍ୟ ଭୟରେ ତତ୍ତତ୍ ଶ୍ଳୋକ ଲିଖିତ ହେଲନାହିଁ । ଆଉ ସାବିତ୍ରୀବ୍ରତ ପୂଜା ଏତତ୍ପରେ କରିବାକୁ ହୁଏ ।

କାରଣ ସାବିତ୍ରୀବ୍ରତ ସ୍ଥଳରେ କଥିତ ହୋଇଅଛି ଯେ ଅନନ୍ତ ବ୍ରତ ତୁଲ୍ୟ ସାବିତ୍ରୀବ୍ରତ କରିବ ।

---

ଅଥ ଭୂତ ଚତୁର୍ଦ୍ଦଶୀ

କାର୍ତ୍ତିକେ କୃଷ୍ଣପକ୍ଷେତୁ ଚତୁର୍ଦ୍ଦଶ୍ୟାଂ ବିନୋଦୟେ ।
ଅବଶ୍ୟମେବ କର୍ତ୍ତବ୍ୟଂ ସ୍ନାନଂ ନରକ ଭୀରୁଭିଃ ॥
ଅପାମାର୍ଗପଲ୍ଲବାନ୍ ଭ୍ରାମୟେତ୍ ଶିରସୋପରି ।
ତତଶ୍ଚ ତର୍ପଣଂ କାର୍ଯ୍ୟଂ ଧର୍ମରାଜସ୍ୟ ନାମଭିଃ ॥

ନରକାୟ ପ୍ରଦାତବ୍ୟୋ ଦୀପଃ ସମ୍ପୂଜ୍ୟ ଦେବତାଃ ।
ଇତି ଲିଙ୍ଗ ପୁରାଣଂ ।

କାର୍ତ୍ତିକ କୃଷ୍ଣପକ୍ଷର ଉଦୟଗାମିନୀ ଚତୁର୍ଦ୍ଦଶୀର ନାମ ଭୂତଚତୁର୍ଦ୍ଦଶୀ , ତହିଁରେ ଗଙ୍ଗାସ୍ନାନ ଓ ହୋମ ତର୍ପଣ କରିବ ଏବଂ ଅପାମାର୍ଗପଲ୍ଲବ ମସ୍ତକୋପରେ ଭ୍ରମଣ କରାଇବ ଏବଂ ପ୍ରଦୋଷରେ ଦୀପଦାନ କରିବ ।

ଏହି ତିଥିରେ ଦୀପଦାନ କଲେ ନରକରୁ ଉଦ୍ଧାର ହେବାକୁ ହୁଏ ଆଉ ଯମ ତର୍ପଣର ଯେସକଳ ମନ୍ତ୍ର ଅଛି ସେହିମନ୍ତ୍ର ବୋଲି ଏକ ୨ ଉଦ୍ଦେଶ୍ୟରେ ତିଳ ସହିତ ତିନିବାର ଜଳ ଦାନ କରିବ । ମସ୍ତକରେ ଅପାମାର୍ଗ ପତ୍ରଭ୍ରମଣର ମନ୍ତ୍ର ଯଥା ; —

ଶୀତଲୋଷ୍ଟ୍ରସମାଯୁକ୍ତସକଣ୍ଟକଦଳାନ୍ୱିତ ।
ହରପାପମପାମାର୍ଗ ଭ୍ରାମ୍ୟମାଣଃ ପୁନଃ ପୁନଃ ॥

---

ଅଥ ପାଷାଣ ଚତୁର୍ଦ୍ଦଶୀ

ବୃଶ୍ଚିକେ ଶୁକ୍ଳପକ୍ଷେତୁ ଯା ପାଷାଣଚତୁର୍ଦ୍ଦଶୀ ।
ତସ୍ୟାମାର୍ଥୟେଦ୍ଦେବୀଂ ନକ୍ତଂ ପାଷାଣ ଭୋଜନଂ ॥
ମାଘମାସ୍ୟ ସିତେପକ୍ଷେ ରଟନ୍ତ୍ୟାଖ୍ୟା ଚତୁର୍ଦ୍ଦଶୀ ।
ତସ୍ୟାମୁଦୟବେଳାୟାଂ ସ୍ନାତା ନାବେ କ୍ଷତେ ଯମଂ ॥
ଇତି ଭବିଷ୍ୟ ପୁରାଣେ ।

ଅନର୍କ୍କାଭ୍ୟୁଦ୍ଧିତେକାଲେ ମାଘକୃଷ୍ଣା ଚତୁର୍ଦ୍ଦଶୀଂ ।
ସ୍ନାତ୍ୱା ସନ୍ତର୍ପ୍ୟ ଚ ଯମାନ୍ ସର୍ବ୍ବ ପାପୈଃ ପ୍ରମୁଚ୍ୟତେ ॥

ଅଗ୍ରହାୟଣ ମାସର କୃଷ୍ଣପକ୍ଷୀୟ ଚତୁର୍ଦ୍ଦଶୀକୁ ପାଷାଣ ଚତୁର୍ଦ୍ଦଶୀ କହି । ଏହି ତିଥିରେ ରାତ୍ରି କାଳରେ ଗୌରୀଙ୍କର ଅର୍ଚ୍ଚନା କରି ପାଷାଣାକାରପିଷ୍ଟକ ଭୋଜନକର୍ ବ୍ରତ

କରିବ । ଆଉ ମାଘ ମାସର କୃଷ୍ଣା ଚତୁର୍ଦ୍ଦଶୀକୁ ରଟନ୍ତୀ ଚତୁର୍ଦ୍ଦଶୀ କହି, ତହିଁରେ ଅରୁଣୋଦୟ କାଳରେ ସ୍ନାନକଲେ ଯମ ଭୟ ନଥାଏ । ଅରୁଣୋଦୟ ବେଳାରେ ସ୍ନାନ ଓ ତର୍ପଣରେ ସର୍ବ ପାପରୁ ମୁକ୍ତି ଲଭନ୍ତିଏ । ଏହି ଚତୁର୍ଦ୍ଦଶୀରେ ରଟନ୍ତୀ ପୂଜା ହୁଏ ଯଦି ଏହିତଥି ଦୁଇଦିନରେ ଅରୁଣୋଦୟ କାଳରେ ପ୍ରାପ୍ତ ହୁଏ ତେବେ ପୂର୍ବ ଦିନରେ ସ୍ନାନ ଓ ଯେଉଁ ଦିନରେ ସନ୍ଧ୍ୟା ମୁଖରେ ପାଇବ ସେହିଦିନ ରଟନ୍ତୀ ପୂଜାକରିବ । ଏହିରଟନ୍ତୀ ପୂଜା ପୌଷର ଗୌଣଚନ୍ଦ୍ର, ମାଘର ମୁଖ୍ୟଚନ୍ଦ୍ରରେ ହେବ

---

ଅଥ ଶିବରାତ୍ରୀ ।

ମାଘ ମାସସ୍ୟ ଶେଷେବା ପ୍ରଥମେ ଫାଲ୍ଗୁନସ୍ୟଚ ।
କୃଷ୍ଣା ଚତୁର୍ଦ୍ଦଶୀ ସାତୁ ଶୀବରାତ୍ରିଃ ପ୍ରକୀର୍ତ୍ତିତା ॥
କାଲମାଧବୀୟେ ସ୍କାନ୍ଦେ ନାଗରଖଣ୍ଡେ ।

ମାଘମାସର ଶେଷରେ ହେଉ ବା ଫାଲ୍‌ଗୁନମାସର ପ୍ରଥମରେ ହେଉ କୃଷ୍ଣା ଚତୁର୍ଦ୍ଦଶୀରେ ଶୀବରାତ୍ରି ବ୍ରତ କରିବ । ଏବଂ ତାହାକୁ ଶିବରାତ୍ରି ଚତୁର୍ଦ୍ଦଶୀ କହି । ପରନ୍ତୁ ମାଘର ଗୌଣଚନ୍ଦ୍ର ଫାଲ୍‌ଗୁନର ମୁଖ୍ୟଚନ୍ଦ୍ର ଗ୍ରହଣୀୟ ।

ମାଘକୃଷ୍ଣ ଚତୁର୍ଦ୍ଦଶ୍ୟାଂ ରବିବାରେ ଯଦାଭବେତ୍ ।
ଭୌମେ ବାପି ଭବେଦ୍ଦେବି କର୍ତ୍ତବ୍ୟଂବ୍ରତମୁତ୍ତମଂ ।
ଶିବଯୋଗସ୍ୟ ଯୋଗେନ ତଭବେଦୁତ୍ତମୋତ୍ତମଂ ।
ଇତି ଈଶାନ ସଂହିତା ।

ମାଘମାସର କୃଷ୍ଣା ଚତୁର୍ଦ୍ଦଶୀରେ ଅର୍ଥାତ୍ ଶିବରାତ୍ରି ବ୍ରତଦିନ ଯଦି ରବିବାର କିବା ମଙ୍ଗଳବାରହୁଏ ତେବେ ଉକ୍ତ ବ୍ରତର ଫଳ ଅତି ଉତ୍କୃଷ୍ଟହୁଏ ଆଉ ଯଦି ରବି ବା ମଙ୍ଗଳବାରଯୁକ୍ତ ବ୍ରତଦିବସରେ ଶିବଯୋଗ ପଡ଼େ ତେବେଶିବରାତ୍ରିର ବ୍ରତଫଳ ଉତ୍ତମାପେକ୍ଷା ଉତ୍ତମ ।

ପୂର୍ବେଦ୍ୟୁ ରପରେ ଦ୍ୟୁର୍ବା ମହାନିଶି ଚତୁର୍ଦ୍ଦଶୀ ।
ବ୍ୟାପ୍ତା ସା ଦୃଶ୍ୟତେ ଯସ୍ୟାଂ ତସ୍ୟାଂ କୁର୍ଯ୍ୟା ଦ୍ବ୍ରତଂନରଃ ।
ଈଶାନ ସଂହିତା ।

ଯଦି ପୂର୍ବଦିନରେ ମହାନିଶି ପ୍ରାପ୍ତହୁଏ ଓ ପରଦିନ ପ୍ରଦୋଷ ପ୍ରାପ୍ତହୁଏ ତେବେ ପୂର୍ବଦିନରେ ବ୍ରତ ଓ ଉପବାସହେବ ।

ପ୍ରଦୋଷ ବ୍ୟାପିନୀ ଗ୍ରାହ୍ୟା ଶିବରାତ୍ରି ଚତୁର୍ଦ୍ଦଶୀ ।
ହେମାଦ୍ରି ଧୃତ ସ୍ମୃତିଃ ।

ପୂର୍ବଦିନ ମହାନିଶାରେ ଚତୁର୍ଦ୍ଦଶୀ ଅଲଭ ହୋଇ ଯଦି ପର-ଦିନରେ ପ୍ରଦୋଷଲାଭହୁଏ ତେବେ ପରଦିନରେ ବ୍ରତାଦିହେବ ।

ଅଥ ପାରଣଂ

ପୂର୍ବୋକ୍ତଜନ୍ମାଷ୍ଟମୀ ପ୍ରକରଣରେ କଥିତହୋଇଅଛି ଯେ ତିଥିର ଅନ୍ତେ ପାରଣକରିବ, କିନ୍ତୁ, ତାହା ଜନ୍ମାଷ୍ଟମୀର ପକ୍ଷେ; ଏସ୍ଥଳେ ସେ ବିଧିନୁହେ, ଏସ୍ଥଳରେ ଯେଉଁତିଥିରେ ଉପବାସ ସେହିତିଥିରେ ପାରଣ, ଅଥାତ୍ ମଧ୍ୟରାତ୍ରି ବ୍ୟାପିନୀ ଚତୁର୍ଦ୍ଦଶୀରେ ଯଦି ଶିବରାତ୍ରି ବ୍ରତକାଲହୁଏ ତେବେ ପାରଣ ବିଷୟରେ ଏହି ପ୍ରମାଣ ଯଥା; —

ଦିନମାନ ପ୍ରମାଣେନ ଯାବଦ୍ରାତ୍ରୌ ଚତୁର୍ଦ୍ଦଶୀ ।
ଶିବରାତ୍ରିସ୍ତୁ ସାକ୍ଷେୟ୍ୟା ଚତୁର୍ଦ୍ଦଶ୍ୟାସ୍ତୁ ପାରଣଂ ॥
ଇତି ଗୌତମୀୟାତ ।

ଯଦି ଦିବସରେ ଚତୁର୍ଦ୍ଦଶୀ ପତିତହୋଇ ମଧ୍ୟରାତ୍ରି ବ୍ୟାପିନୀହୁଏ ତେବେ ସେହିଚତୁର୍ଦ୍ଦଶୀରେ ପାରଣକରିବ ତହିଁରେ ଫଳାଧିକ୍ୟ ଅଛି ପ୍ରମାଣଂ ଯଥା; —

ବ୍ରହ୍ମାଣ୍ଡୋଦରମଧ୍ୟେତୁ ଯାନି ତୀର୍ଥାନି ସନ୍ତିବୈ ।
ପୂଜିତାନି ଭବନ୍ତୀହ ଭୂତାୟାଂ ପାରଣଂ କୃତେ ॥
ଇତି ସ୍କାନ୍ଦାତ୍ ।

ଏହିପୃଥିବୀମଧ୍ୟରେ ଯେ ସକଳତୀର୍ଥ ଅଛି ଚତୁର୍ଦ୍ଦଶୀରେ ପାର୍-ଣକଲେ ସେମାନଙ୍କର ପୂଜାରଫଳ ପ୍ରାପ୍ତହୁଏ ।

ଯଦି ପରଦିନରେ ଉକ୍ତ ଚତୁର୍ଦ୍ଦଶୀ ନ ଥାଏ ଓ ପରଦିନରେ ପ୍ରଦୋଷବ୍ୟାପିନୀ ତିଥିନହୁଏ ତେବେ ପୂର୍ବଦିନଶାଥ ବ୍ୟାପିନୀ ଚତୁର୍ଦ୍ଦଶୀରେ ଉପବାସ ଓ ଅମାବାସ୍ୟାରେ ପାର୍‌ଣକର୍‌ବ ।

ଶିବାଘୋର୍ ତଥା ପ୍ରେତା ସାବିତ୍ରୀ ଚ ଚତୁର୍ଦ୍ଦଶୀ ।
କୁହୁ ସୁକ୍ତୈବ କର୍ତ୍ତବ୍ୟା କୁହ୍ୱାମେ ବହ୍ନି ପାରଣଂ ।
ଚୈତ୍ରେ କୃଷ୍ଣ ଚତୁର୍ଦ୍ଦଶ୍ୟାମଙ୍ଗାରକଦିନଂ ଭବେତ୍ ।
ପିଶାଚତ୍ୱଂ ପୁନର୍ନିସ୍ୟାଂ ଗଙ୍ଗାୟାଂ ସ୍ନାନ ଭୋଜନାତ୍ ॥
ଇତି ଭୋଜଦେବଧୃତଂ

ଚୈତ୍ରମାସର କୃଷ୍ଣା ଚତୁର୍ଦ୍ଦଶୀକୁ ଅଙ୍ଗାରକ ଚତୁର୍ଦ୍ଦଶୀକହି । ଏ-ହିଦିନ ଗଙ୍ଗାସ୍ନାନେ, ଗଙ୍ଗାରେ ଭୋଜନ କରଣେ, ପିଶାଚତ୍ୱ ପ୍ରାପ୍ତ ହୁଏନାହିଁ । ଏହିସ୍ଥଳରେ ଫାଲ୍ଗୁନର ମୁଖ୍ୟଚାନ୍ଦ୍ର ଓ ଚୈତ୍ରର୍ଗୌଣ-ଚାନ୍ଦ୍ର ବ୍ୟବସ୍ଥା ।

—୦(❋)୦—

## ଅଥ ମଦନ ଚତୁର୍ଦ୍ଦଶୀ

ମଧୁମାସେତ ସଂପ୍ରାପ୍ତେ ଶୁକ୍ଳପକ୍ଷେ ଚତୁର୍ଦ୍ଦଶୀ ।
ପ୍ରୋକ୍ତାମଦନଭଞ୍ଜୀତ ସିଦ୍ଧିଦା ତୁ ମହୋତ୍ସବା ॥
ସ୍କନ୍ଦଯୋଗ୍ ଗମସ୍ୟୋଃ ।
ଚୈତ୍ରଶୁକ୍ଳେ ଚତୁର୍ଦ୍ଦଶ୍ୟ ଯଃସ୍ନାନାତ୍ ଶିବସନ୍ନିଧୌ ।
ପିଶାଚତ୍ୱଂ ନତସ୍ୟସ୍ୟାଦ୍ ଗଙ୍ଗାୟାନ୍ତୁ ବିଶେଷତଃ ॥
ଇତି ଦେବଲଃ ।

ଚୈତ୍ରମାସର ଶୁକ୍ଳପକ୍ଷୀୟ ଚତୁର୍ଦ୍ଦଶୀକୁ ମଦନଚତୁର୍ଦ୍ଦଶୀକହି ଏହିଦିନରେ ମଦନପୂଜା ତତ୍ପ୍ରୀତ୍ୟର୍ଥେ ମହୋତ୍ସବାଦି କଲେ ମନୁଷ୍ୟ

ସର୍ବ ଫଳପ୍ରାପ୍ତହୁଏ । ଆଉ ଏହିଦିନରେ ଶିବସନ୍ନିଧାନରେ ଗଙ୍ଗା-ସ୍ନାନକଲେ ପିଶାଚତ୍ୱ ପ୍ରାପ୍ତହୁଏନାହିଁ ।

—※※※—

ଅଥ ପୌର୍ଣ୍ଣମାସୀ

ସାଚ ଚତୁର୍ଦ୍ଦଶୀ ଯୁତାଗ୍ରାହ୍ୟା ଯୁଗ୍ମାତ୍

ଚତୁର୍ଦ୍ଦଶୀସହିତ ଯୁଗ୍ମ ହେତୁରୁ ଚତୁର୍ଦ୍ଦଶୀ ଯୁତାପୂର୍ଣ୍ଣିମା ଗ୍ରାହ୍ୟହୁଏ ଦୈବକର୍ମରେ ଏହା ଅଦରଣୀୟ ।

ଅମାବାସ୍ୟା ଓ ପୂର୍ଣ୍ଣମାରେ ଗଙ୍ଗାଜଳରେ ସ୍ନାନକଲେ ଯମ ପୁର ଦର୍ଶନ ହୁଏନାହିଁ । ପ୍ରମାଣଂ ଯଥା; —

ପକ୍ଷାନ୍ତେ ସ୍ରୋତସି ସ୍ନାତ୍ୱା ତେନନାପ୍ନୋତି ସଂପୁରଂ ।

ଇତି ଯମଃ ।

ଦୂଶ୍ୟେତେ ସହିତୌ ଯସ୍ୟାଂ ଦିବି ଚନ୍ଦ୍ରବୃହସ୍ପତୀ ।

ପୌର୍ଣ୍ଣମାସୀତୁ ମହତୀ ଜ୍ଞେୟା ସମ୍ବତ୍ସରେତ୍ତମା ॥

ତସ୍ୟାଂ ସ୍ନାନୋପବାସାଦ୍ୟମକ୍ଷୟଂପରିକୀର୍ତ୍ତିତଂ ।

ଇତିବିଷ୍ଣୁଃ ।

ଯଦି ପୌର୍ଣ୍ଣିମାସୀରେ ଚନ୍ଦ୍ର ଓ ବୃହସ୍ପତିଗ୍ରହର ଯୋଗଥାଏ ତେବେ ତାହାକୁ ମହାପୂର୍ଣ୍ଣମା କହି । ତହିଁରେ ସ୍ନାନ ଓ ଉପବାସର ଫଳ ଅକ୍ଷୟହୁଏ ।

ମହାଜ୍ୟୈଷ୍ଠ୍ୟାନ୍ତୁ ଯଃ ପଶ୍ୟେତ୍ ପୁରୁଷଃ ପୁରୁଷୋତ୍ତମଂ ।

ବିଷ୍ଣୁଲୋକ ମବାପ୍ନୋତି ମୋକ୍ଷଂଗଙ୍ଗାମ୍ବୁମଜ୍ଜନାତ୍ ।

ଇତି ବ୍ରହ୍ମପୁରାଣଂ ।

ମହାଜ୍ୟୈଷ୍ଠୀରେ ଯେଉଁ ବ୍ୟକ୍ତି ପୁରୁଷୋତ୍ତମ ଅର୍ଥାତ୍ ଜଗନ୍ନାଥଙ୍କ ଦର୍ଶନକଲେ ସେ ଅନ୍ତରେ ବିଷ୍ଣୁଲୋକ ପ୍ରାପ୍ତହୁଏ । ଆଉ ଗଙ୍ଗାସ୍ନାନକଲେ ମୋକ୍ଷହୁଏ ।

ମହାଜ୍ୟୈଷ୍ଠୀ ମାହ ।

ଐନ୍ଦ୍ରେଗୁରୁଃ ଶଶୀଚୈବ ପ୍ରାଜାପତ୍ୟେ ରବିସ୍ତଥା ।
ପୂର୍ଣ୍ଣିମା ଗୁରୁବାରେଣ ମହାଜ୍ୟୈଷ୍ଠୀ ପ୍ରକୀର୍ତ୍ତିତା ॥
ଐନ୍ଦ୍ରାକ୍ଷେ ଯଥବାନୈନ୍ଦ୍ରେ ଗୁରୁଚନ୍ଦ୍ରୌ ଯଦାସ୍ଥିତୌ ।
ପୂର୍ଣ୍ଣିମା ଜ୍ୟେଷ୍ଠ ମାସସ୍ୟ ମହାଜ୍ୟୈଷ୍ଠୀ ପ୍ରକୀର୍ତ୍ତିତା ॥
ଐନ୍ଦ୍ରେଗୁରୁଃ ଶଶୀଚୈବ ପ୍ରାଜାପତ୍ୟେ ରବିସ୍ତଥା ।
ପୂର୍ଣ୍ଣିମାଜ୍ୟେଷ୍ଠ ମାସସ୍ୟ ମହାଜ୍ୟୈଷ୍ଠୀ ପ୍ରକୀର୍ତ୍ତିତା ॥
ଐନ୍ଦ୍ରେ ନୈନ୍ଦ୍ରେ ଯଦାଜୀବ ସ୍ତପୂର୍ଣ୍ଣିଦଶକେର ବିଃ ।
ପୂର୍ଣ୍ଣିମାଶକ୍ରଚନ୍ଦ୍ରେଣ ମହାଜ୍ୟୈଷ୍ଠୀ ପ୍ରକୀର୍ତ୍ତିତା ॥
ଜ୍ୟୈଷ୍ଠସମ୍ପୂର୍ଣ୍ଣେ ଚୈବ ଜ୍ୟେଷ୍ଠମାସସ୍ୟ ପୂର୍ଣ୍ଣିମା ।
ଜ୍ୟେଷ୍ଠାଭେନ ସମାଯୁକ୍ତା ମହାଜ୍ୟୈଷ୍ଠୀ ପ୍ରକୀର୍ତ୍ତିତା ॥
ବ୍ରହ୍ମପୁରାଣଂ ଗୃହମାର୍ତ୍ତଣ୍ଡଶ୍ଚ ।

ଜ୍ୟେଷ୍ଠ ମାସର ପୂର୍ଣ୍ଣିମାରେ ଜ୍ୟେଷ୍ଠା ନକ୍ଷତ୍ରରେ, ଯଦି ଗୁରୁ ଏବଂ ଶଶୀଥାଆନ୍ତି, ରୋହିଣୀ ନକ୍ଷତ୍ରରେ ଯଦି ରବିଥାନ୍ତି ଏବଂ ସେହି ଦିନରେ ଗୁରୁବାର ହୁଏ ତାହାହେଲେ ମହାଜ୍ୟୈଷ୍ଠୀ ହୁଏ । ଅଥବା ଜ୍ୟେଷ୍ଠାନକ୍ଷତ୍ରରେ କି ଅନୁରାଧାନକ୍ଷତ୍ରରେ ଗୁରୁଚନ୍ଦ୍ର ଉଭୟ ଥିଲେ ଜ୍ୟେଷ୍ଠମାସର ପୂର୍ଣ୍ଣିମା ମହାଜ୍ୟୈଷ୍ଠୀ ନାମରେ ପ୍ରସିଦ୍ଧ ।

ତୃତୀୟ ବଚନର ଅର୍ଥ ପ୍ରାୟ ପ୍ରଥମ ବଚନର ତୁଲ୍ୟ । କିନ୍ତୁ ପ୍ରଥମ ବଚନରେ ଗୁରୁବାରର ଆବଶ୍ୟକତା, ଏହିବଚନରେ ଗୁରୁବାରର ଆବଶ୍ୟକତା ନାହିଁ ଏହିମାତ୍ର ବିଶେଷ । ଯେତେବେଳେ ଜ୍ୟେଷ୍ଠା ଅଥବା ଅନୁରାଧାନକ୍ଷତ୍ରରେ ବୃହସ୍ପତି ଥାଆନ୍ତି ଏବଂ ତତ୍ପୂର୍ଣ୍ଣିଦଶକରେ ଅର୍ଥାତ୍ ରୋହିଣୀ ଓ ମୃଗଶିରା ନକ୍ଷତ୍ରରେ ରବିଥାନ୍ତି ଏବଂ ଜ୍ୟେଷ୍ଠା ନକ୍ଷତ୍ରଯୁକ୍ତା ଶଶୀଥିଲେ ପୂର୍ଣ୍ଣିମା ମହା-

ଜ୍ୟୈଷ୍ଠୀ ହୁଏ । ଜ୍ୟୈଷ୍ଠ ନାମା ସମ୍ବତ୍ସରରେ ଜ୍ୟୈଷ୍ଠମାସର ପୂର୍ଣ୍ଣିମା ଜ୍ୟେଷ୍ଠାନକ୍ଷତ୍ରଦ୍ୱାରା ଯୁକ୍ତହେଲେ ମହାଜ୍ୟୈଷ୍ଠୀଯୋଗ ହୁଏ । ଜ୍ୟୈଷ୍ଠ ସମ୍ବତ୍ସର ଯଥା,—

ଜ୍ୟେଷ୍ଠା ମୂଲୋପଗେ ଜୀବେ ବର୍ଷଂସ୍ୟାଚ୍ଛିନ୍ନ ବୈବତଂ ।
ବହ୍ନି ଧର୍ମୋତ୍ତରେ ।

ଯେଉଁ ବତ୍ସରମଧ୍ୟରେ ଜ୍ୟେଷ୍ଠା କିମ୍ବା ମୂଲାନକ୍ଷତ୍ରରେ ବୃହସ୍ପତିଙ୍କର ଉଦୟ ବା ଅସ୍ତହୁଏ ସେହିବତ୍ସରକୁ ଜ୍ୟେଷ୍ଠନାମା ସମ୍ବତ୍ସରକହନ୍ତି ।

ପୂର୍ଣ୍ଣିମା ମନ୍ୱନ୍ତର ବିଷୟ ପୂର୍ବେ କଥିତହୋଇ ଅଛି । ମାଘ ଓ ଶ୍ରାବଣୀ ପୌର୍ଣ୍ଣମାସୀରେ ଏବଂ ଆଶ୍ୱିନର କୃଷ୍ଣା ତ୍ରୟୋଦଶୀରେ ଶ୍ରାଦ୍ଧକର୍ମ ଆବଶ୍ୟକ ତାହାର ପ୍ରମାଣ ପୂର୍ବେ କଥିତହୋଇ ଅଛି ଏବଂ ଏସ୍ଥଳରେ ପୁନର୍ବା ଲିଖିତହେଲା । ତଦ୍ୟଥା;—

ପୌର୍ଣ୍ଣମାସୀ ତଥା ମାଘୀ ଶ୍ରାବଣୀଚ ନରୋତ୍ତମ ।
ପ୍ରୌଷ୍ଠ ପଦ୍ୟା ମତୀତାୟାଂ ତଥାକୃଷ୍ଣା ତ୍ରୟୋଦଶୀ ॥
ଏତାଂସ୍ତୁ ଶ୍ରାଦ୍ଧକାଲାନ୍ ବୈନିତ୍ୟାନାହ ପ୍ରଜାପତିଃ ।
ଇତି ବହ୍ନି ଧର୍ମୋତ୍ତରେ ।

ଯଦି ପୂର୍ବଦିନରେ ସଙ୍ଗବକାଳରେ ପୂର୍ଣ୍ଣିମାତିଥି ଲଭନ୍ତିଏ ତେବେ ଏହିଦିନରେ ଶ୍ରାଦ୍ଧକରିବ । ଯଦି ଦୁଇଦିନରେ ସଙ୍ଗବକାଳ ଲଭନ୍ତିଏ ତେବେ ପରଦିନରେ ଶ୍ରାଦ୍ଧକରିବ୍ୟ । ସୂର୍ଯ୍ୟୋଦୟର ପର ମୁହୂର୍ତ୍ତ ତ୍ରୟକୁ ପ୍ରାତଃକାଳ କହି ତପରେ ମୁହୂର୍ତ୍ତ ତ୍ରୟ ସଙ୍ଗବକାଳ ପ୍ରମାଣଂ ଯଥା;—

ଶୁକ୍ଲପକ୍ଷସ୍ୟ ପୂର୍ବାହ୍ନେ ଶ୍ରାଦ୍ଧଂ କୁର୍ଯ୍ୟା ଦ୍ୱିଚକ୍ଷଣଃ ।
କୃଷ୍ଣପକ୍ଷେ ପରାହ୍ନେହି ରୌହିଣନ୍ତୁ ନଲଙ୍ଘୟେତ୍ ॥
ଇତି ବାୟୁ ପୁରାଣଂ ।

ଶୁକ୍ଳପକ୍ଷେ ତିଥିର୍ଗ୍ରାହ୍ୟା ଯସ୍ୟାମଭ୍ୟୁଦିତୋ ରବିଃ ।
ଇତି ବୃଦ୍ଧଧର୍ମୋତ୍ତରେ ।

—o()o—

ଅଥ କୋଜାଗର କୃତ୍ୟଂ

ତତସ୍ତୁ ପ୍ରଦୋଷବ୍ୟାପିନୀ ଗ୍ରାହ୍ୟା ।
ପ୍ରଦୋଷ ବ୍ୟାପିନୀ ଗ୍ରାହ୍ୟା ତିଥିର୍ନକ୍ତବ୍ରତେ ସଦା ॥
ଇତି ବ୍ୟାସଃ ।

ଆଶ୍ୱିନର ଯେଉଁ ପୂର୍ଣ୍ଣିମା ତାହାର ନାମ କୋଜାଗର ପୂର୍ଣ୍ଣିମା ସେହି ପୂର୍ଣ୍ଣିମା ପ୍ରଦୋଷବ୍ୟାପିନୀ ଗ୍ରାହ୍ୟା । ପ୍ରମାଣଂ, — ( ଆଶ୍ୱିନେ ପୌର୍ଣ୍ଣମାସ୍ୟାନ୍ତୁ ଚରେତ୍ ଜାଗରଣଂ ନିଶି ) ଏହି ବଚନ ମହାର୍ଣ୍ଣବ ଓ ଲିଙ୍ଗପୁରାଣରେ କଥିତଅଛି ।

ପରନ୍ତୁ ସ୍ମାର୍ତ୍ତଭଟ୍ଟାଚାର୍ଯ୍ୟ ମହାଶୟ ଏହିସ୍ଥଳରେ ଏରୂପ ବ୍ୟାଖ୍ୟା କରିଅଛନ୍ତି ଯେ, ଯେଉଁ ଦିନରେ ପ୍ରଦୋଷ ଓ ନିଶୀଥସମୟବ୍ୟାପିନୀ ତିଥିପ୍ରାପ୍ତ ହେବ ସେହିଦିନରେ କୋଜାଗରକୃତ୍ୟ ହୋଇବ । ଯଦି ପୂର୍ବ ଦିନରେ ନିଶୀଥ ସମୟରେ ଓ ପରଦିନରେ ପ୍ରଦୋଷରେ ଉକ୍ତ ତିଥିପ୍ରାପ୍ତ ହୁଏ ତେବେ ପରଦିନରେ ତତ୍‌କୃତ୍ୟ ଯଦି ପୂର୍ବଦିନରେ ନିଶୀଥକାଳରେ ଉକ୍ତ ତିଥିହୁଏ ଓ ପରଦିନରେ ପ୍ରଦୋଷସମୟରେ ଉକ୍ତ ତିଥି ପାତନହୁଏ ତାହା ହେଲେ ନିଶୀଥ ବ୍ୟାପିନୀ ତିଥିରେ ଅର୍ଥାତ୍ ପୂର୍ବଦିନରେ କୋଜାଗର କୃତ୍ୟକର୍ତ୍ତବ୍ୟ ।

ନିଶୀଥେ ବରଦା ଲକ୍ଷ୍ମୀଃ କୋଜାଗର୍ତ୍ତୀତି ଭାଷିଣୀ ।
ତସ୍ମୈ ବିତ୍ତଂ ପ୍ରଯଚ୍ଛାମି ଅକ୍ଷୈଃ କ୍ରୀଡାଂ କରୋତି ଯଃ ॥
ନାରିକେଳୈଶ୍ଚ ପିଷ୍ଟକୈଃ ପିତୄନ୍ ଦେବାନ୍ ସମର୍ଚ୍ଚୟେତ୍ ।
ବନ୍ଧୂଂଶ୍ଚ ପ୍ରୀଣୟେତ୍ତେନ ସ୍ୱୟଂ ତଦଶନୋ ଭବେତ୍ ।
ଇତି ଲିଙ୍ଗପୁରାଣେ ।

ପୂର୍ଣ୍ଣିମାର ନିଶୀଥ ସମୟରେ ଲକ୍ଷ୍ମୀବରଦାତ୍ରୀହୋଇ ଏହି ବାକ୍ୟ କହନ୍ତି, ଅଦ୍ୟରାତ୍ରିରେ ଯେଉଁବ୍ୟକ୍ତି ଜାଗରିତହୋଇ ଅକ୍ଷକ୍ରୀଡାକରିବ ତାହାକୁ ଆମ୍ଭେ ଧନ ପ୍ରଦାନକରିବୁଁ ଏହି ହେତୁରୁ ତାଙ୍କର ପୂଜାକରିବାକୁ ହୁଏ । ଆଉ ଏହିରାତ୍ରିରେ ନାରିକେଳ ଓ ଚିପିଟକଦ୍ୱାରା ପିତୃଗଣଙ୍କର ଓ ଦେବତା ଗଣଙ୍କର ଅର୍ଚ୍ଚନାକରିବ ଏବଂ ବନ୍ଧୁ ଗଣଙ୍କୁ ଭକ୍ଷଣକରାଇ ସ୍ୱୟଂ ଉକ୍ତ ବସ୍ତୁ ଭକ୍ଷଣକରିବ ।

କାର୍ତ୍ତିକରପୂର୍ଣ୍ଣିମାରେ ରାସଯାତ୍ରା ଓ ମନ୍ୱନ୍ତରହୁଏ ଏହାର ପ୍ରମାଣପୂର୍ବେ ଉକ୍ତହୋଇଅଛି ।

ପୌଷ୍ୟାନ୍ତୁ ସମତୀତାୟାଂ ଯାବଦ୍ଭବତି ପୂର୍ଣ୍ଣିମା ।
ମାଘମାସସ୍ୟ ଦେବେନ୍ଦ୍ର ପୂଜାବିଷ୍ଣୋର୍ବିଧୀୟତେ ।
ବୈଷ୍ଣବାମୃତ ସ୍କନ୍ଦପୁରାଣଂ ।

ପୌଷମାସର ପୂର୍ଣ୍ଣିମା ଅତୀତହୋଇ ମାଘମାସର ପୂର୍ଣ୍ଣିମାପର୍ଯ୍ୟନ୍ତ ପ୍ରତିଦିନ ଯଥା ନିୟମରେ ବିଷ୍ଣୁପୂଜାକରିବ, ଆଉ ଏହି ସମୟ ପର୍ଯ୍ୟନ୍ତ ମୂଳା ଭକ୍ଷଣ କରିବନାହିଁ । ପ୍ରମାଣଂ ଯଥା;—

ବରଂ ଭକ୍ଷ୍ୟମଭକ୍ଷ୍ୟଞ୍ଚ ପିବେଦ୍ୱା ଗର୍ହିତଞ୍ଚ ଯତ୍ ।
ବର୍ଜ୍ଜନୀୟଂ ପ୍ରଯତ୍ନେନ ମୂଲକଂ ମଦ୍ୟ ସମଂ ॥
ଇତି ସ୍କନ୍ଦପୁରାଣଂ ।

ବରଂ ଅଭକ୍ଷ୍ୟ ଭକ୍ଷଣକଲେ କିମ୍ବା ଗର୍ହିତ ପେୟବସ୍ତୁ ପାନକଲେ ତାଦୃଶ ଦୋଷନହୁଏ ନାହିଁ ମାଘମାସରେ ମୂଳାଭକ୍ଷଣକଲେ ତତୋଧିକ ଦୋଷହୁଏ ମାଘମାସରେ ମୂଳକଭକ୍ଷଣ ମଦ୍ୟ ଭକ୍ଷଣ ତୁଲ୍ୟଜାଣିବ ।

ତତ୍ର ପ୍ରାୟଶ୍ଚିତ୍ତଂ ।

ବ୍ରାହ୍ମଣୋ ମୂଲକଂଭୁକ୍ତ୍ୱା ଚରେଚ୍ଚାନ୍ଦ୍ରାୟଣବ୍ରତଂ ।

ଅନ୍ୟଥାନରକଂ ଯାତି ଯାବଦାହୂତ ସଂପ୍ଲବଂ ॥

ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ ମଧ୍ୟରେ ଯେଉଁ ବ୍ୟକ୍ତି ଉକ୍ତସମୟରେ ମୂଳାଭକ୍ଷଣ କରିବ ତାର ଚାନ୍ଦ୍ରାୟଣବ୍ରତ ପ୍ରାୟଶ୍ଚିତ୍ତ ବିଧେୟ । ଏହାର ଅନ୍ୟଥାକଲେ ନରକରେ ପଡ଼ନ୍ତି ।

ନରୋଦୋଲାଗତଂ ଦୃଷ୍ଟ୍ୱା ଗୋବିନ୍ଦଂ ପୁରୁଷୋତ୍ତମଂ ।

ଫାଲ୍‌ଗୁନ୍ୟାଂ ସଂଯତୋଭୂତ୍ୱା ଗୋବିନ୍ଦସ୍ୟ ପୁରଂବ୍ରଜେତ୍ ॥

କୃତ୍ୟ ଚିନ୍ତାମଣୌ ବ୍ରହ୍ମପୁରାଣଂ ।

ଫାଲ୍‌ଗୁନର ପୌର୍ଣ୍ଣମାସୀ ପ୍ରାପ୍ତହୋଇ ମନୁଷ୍ୟଗଣ ଶ୍ରୀକୃଷ୍ଣଙ୍କର ଦୋଲଯାତ୍ରାସକାଶେ ଉପବାସାଦିକଲେ ଅନ୍ତ କାଳରେ ଗୋବିନ୍ଦଙ୍କର ପୁର ଅର୍ଥାତ୍ ବୈକୁଣ୍ଠଧାମ ପ୍ରାପ୍ତହୁଏ ।

—୦:※:୦—

ଅଥାମାବସ୍ୟା ।

ଅମାବସ୍ୟା କେଉଁ ଦିନରେ ଗ୍ରାହ୍ୟା ତତ୍ପ୍ରମାଣଂ (" ଷଷ୍ଠ୍ୟଷ୍ଟମା-ଷ୍ଟାଦି ) ଭାଦ୍ରବର ଅମାବସ୍ୟାକୁ ମହାଳୟାକହି । କାର୍ଯ୍ୟସ୍ଥଳରେ ଆବଶ୍ୟକ ଉଲ୍ଲେଖକରିବାକୁ ହେବ । ଏହିଦିନରେ ନିତ୍ୟ ପାର୍ବଣ ଶ୍ରାଦ୍ଧ ଓ ଷୋଡ଼ଶ ପିଣ୍ଡଦାନ କରିବ । ଇତ୍ୟାଦିବିଷୟ ଅନେକ ସ୍ଥଳେ ଉକ୍ତ ହୋଇଅଛି ।

ଅମାବସ୍ୟାନ୍ତୁ କନ୍ୟାର୍କେ ତୀର୍ଥ ପ୍ରାପ୍ତୌ ତଥା ନୃପ ।

କୃତ୍ୱା ଶ୍ରାଦ୍ଧଂ ବିଧାନେନ ଦଦ୍ୟାତ୍ ଷୋଡ଼ଶପିଣ୍ଡକଂ ।

—୦:O:୦—

ଅଥଦୀପାନ୍ୱିତା ।

ପ୍ରେତ୍ୟଂ ଦୀପାନ୍ୱିତା ଚାର୍କ ଖ୍ୟାତାପଞ୍ଚଦଶୀତିଥି ।

ତସ୍ୟାଂ ଦଦ୍ୟାନ୍ନଦେହିତ୍ୱଂ ପିତୃଣାଂ ବୈମହାଳୟେ ॥

ଇତି ଭବିଷ୍ୟ ପୁରାଣଂ ।

କାର୍ତ୍ତିକର ଅମାବାସ୍ୟାକୁ ଦୀପାନ୍ୱିତା କହନ୍ତି । ଏହିଦିନରେ ପାର୍ବଣଶ୍ରାଦ୍ଧକରିବ । ଯେ ମହାଳୟାରେ ଏହିଶ୍ରାଦ୍ଧ ନକରେ ସେବ୍ୟକ୍ତି ଦୀପାନ୍ୱିତାରେ ଏହିଶ୍ରାଦ୍ଧକରିବ । ପାର୍ବଣଶ୍ରାଦ୍ଧରପକ୍ଷେ ଏହିପ୍ରମାଣ । ଯଥା;—

ତୁଲାସଂସ୍ଥିତେ ଭାନୌ ଅମାବସ୍ୟାଂ ନରାଧିପ ।
ସ୍ନାତ୍ୱାଦେବାନ୍ ପିତୃନ୍ ଭକ୍ତ୍ୟା ସମ୍ପୂଜ୍ୟାଥ ପ୍ରଣମ୍ୟଚ ॥
କୃତ୍ୱାତୁ ପାର୍ବଣଶ୍ରାଦ୍ଧଂ ଦଧିକ୍ଷୀରଗୁଡ଼ାଦିଭିଃ ॥
ଇତି ଜ୍ୟୋତିଷେ ।

କାର୍ତ୍ତିକମାସର ଅମାବସ୍ୟାରେ ସ୍ନାନାନ୍ତର ଦଧିକ୍ଷୀର ଗୁଡ଼ାଦିଦ୍ୱାରା ଦେବଗଣ ଓ ପିତୃଗଣଙ୍କୁ ଭକ୍ତି ପୂର୍ବକ ଅର୍ଚ୍ଚନା ଓ ପାର୍ବଣଶ୍ରାଦ୍ଧକରିବ । ଆଉ ଦୀପାନ୍ୱିତାରେ ଦୀପଦାନକରିବ । ପିତୃଗଣଙ୍କୁ ପଥଦର୍ଶନକରି ତାହାର ଉଦ୍ଦେଶ୍ୟ । କାରଣସେମାନେ ଆସି ଶ୍ରାଦ୍ଧଭାଗ ଗ୍ରହଣକରିବେ । ପ୍ରମାଣଂ ( ଉଲ୍କାହସ୍ତାନରାଃକୁର୍ଯ୍ୟାତ୍ ପିତୃଣାଂ ମାର୍ଗଦର୍ଶନଂ ) ପ୍ରତିଗମନକାଳରେ ସେମାନଙ୍କର ପଥ ପ୍ରଦର୍ଶନକରି ଅବଶ୍ୟକ ।

ପ୍ରଦୋଷସମୟେ ଲକ୍ଷ୍ମୀଂ ପୂଜୟିତ୍ୱା ଯଥାକ୍ରମଂ ।
ଦୀପରକ୍ଷା ତଥା କାର୍ଯ୍ୟା ଭକ୍ତ୍ୟାଦେବ ଗୃହେଷ୍ୱପି ॥

ଆଉ ଏହିଦିନରେ ଲକ୍ଷ୍ମୀପୂଜା ଓ ଉଲ୍କାସମୟରେ ଦେବଗୃହରେ ଦୀପଦାନ କରିବ । ଉତ୍କଳରେ ଏହିଦିନରେ କାଳିକାପୂଜାର ବିଧିଅଛି ମାତ୍ରରେ କେବଳ ଲକ୍ଷ୍ମୀପୂଜା କରିବାକୁ ଆଦେଶ ଅଛି ।

ଯଦି ଦୁଇଦିନରେ ପ୍ରଦୋଷ ସମୟରେ ଅମାବସ୍ୟା ପାଏ ତେବେ ସ୍ମୃତ୍ୟାଦିର ହେତୁରୁ ପରଦିନରେ ଲକ୍ଷ୍ମୀପୂଜାଦି କରିବ ।

ଦଣ୍ଡୈକେ ରଜନୀଯୋଗେ ଦର୍ଶଃସ୍ୟାତ୍ପରେଽହନି ।
ତଦାବିହାୟ ପୂର୍ବେଦ୍ୟୁଃ ପରେଦ୍ୟୁଃ ସୁଖରାତ୍ରିକା ।
ଇତି ଜ୍ୟୋତିଷେ ।

ଯଦିପରଦିନରେ ଏକଦଣ୍ଡ ରଜନୀପର୍ଯ୍ୟନ୍ତ ଅମାବସ୍ୟାଥାଏ ତାହାହେଲେ ପୂର୍ବଦିନ ତ୍ୟାଗକରି ପରଦିନରେ ସୁଖରାତ୍ରି ହେଉଥିବାରୁ ପରଦିନରେ ଲକ୍ଷ୍ମୀପୂଜା କରିବ ।

ଦୀପଦାନ ମନ୍ତ୍ରଃ ।

ଶସ୍ତ୍ରାଶସ୍ତ୍ର ହତାନାଞ୍ଚ ଭୂତାନାଂ ଭୂତଦର୍ଶୟୋଃ ।
ଉଜ୍ଜ୍ୱଲଜ୍ୟୋତିଷାଦେହଂ ଦହେୟଂ ବ୍ୟୋମବହ୍ନିନା ।
ଅଗ୍ନିଦଗ୍ଧାଶ୍ଚ ଯେଜୀବା ଯେ ଽ ପ୍ୟ ଦଗ୍ଧାଃକୁଳେମମ ।
ଉଜ୍ଜ୍ୱଲଜ୍ୟୋତିଷାଦଗ୍ଧାସ୍ତେଯାନ୍ତୁ ପରମାଂଗତିଂ ॥

ଏହିମନ୍ତ୍ରବୋଲି ପ୍ରଜ୍ଜ୍ୱଳିତଅଗ୍ନି ଦାନକରିବ ତତ୍ପରେ କୃତାଞ୍ଜଳିହୋଇ ଏହି ମନ୍ତ୍ର ପାଠକରିବ ।

ଯମଲୋକଂପରିତ୍ୟଜ୍ୟ ଆଗତା ଯେ ମହାଳୟେ ।
ଉଜ୍ଜ୍ୱଳଜ୍ୟୋତିଷାବର୍ତ୍ମ ପ୍ରପଶ୍ୟନ୍ତୋ ବ୍ରଜନ୍ତୁ ତେ ॥
ଏମନ୍ତ୍ରବୋଲି ପିତୃଗଣଙ୍କୁ ବିସର୍ଜ୍ଜନ କରିବ ।

ଯଦିଉଭୟଦିନରେ ପ୍ରଦୋଷସମୟରେ ଅମାବସ୍ୟାପ୍ରାପ୍ତନହୁଏ ତେବେ ଶ୍ରାଦ୍ଧର ପରକ୍ଷଣରେ ଦିବସରେ ଉଲ୍କାଦାନ କରିବ । ଆଉ ଯଦି ପର୍ବଦିନ ପ୍ରଦୋଷ ସମୟରେ ଅମାବସ୍ୟାଯୋଗହୋଇ ପର ଦିନ ଶ୍ରାଦ୍ଧକାଳ ପ୍ରାପ୍ତହୁଏ ତେବେ ପୂର୍ବଦିନରେ ପ୍ରଦୋଷ ସମୟରେ ଉଲ୍କାଦାନକରି ପରଦିନ ଶ୍ରାଦ୍ଧକରିବ । ଆଉ ଯଦି ଉଭୟଦିନରେ ପ୍ରଦୋଷକାଳରେ ଅମାବସ୍ୟାଲାଭହୁଏ ତେବେପରଦିନରେ କରିବ ।

---

ଅଥାର୍ଦ୍ଧୋଦୟଯୋଗଃ ।

ଅମାର୍କପାତଶ୍ରବଣୈର୍ଯ୍ୟୁକ୍ତା ଚେତ୍ ପୌଷମାଘୟୋଃ ।
ଅର୍ଦ୍ଧୋଦୟଃ ସବିଜ୍ଞେୟଃ କୋଟିସୂର୍ଯ୍ୟଗ୍ରହୈଃସମଃ ।
ଇତି ଯାଜ୍ଞାରି କର୍ମ୍ମସ୍ମୃତି ।

ପୌଷ କି ମାଘମାସର ଅମାବସ୍ୟାରେ ଯଦି ରବିବାରହୁଏ ଏବଂ ଶ୍ରବଣା ନକ୍ଷତ୍ରଓବ୍ୟତୀପାତଯୋଗହୁଏ ତେବେସେହିଦିନରେ ଅର୍ଦ୍ଧୋଦୟଯୋଗହୁଏ, ତହିଁରେ ଗଙ୍ଗାସ୍ନାନକଲେ କୋଟିସୂର୍ଯ୍ୟ ଗ୍ରହଣକାଳୀନ ଗଙ୍ଗାସ୍ନାନର ଫଳ ପ୍ରାପ୍ତହୁଏ ।

ପରନ୍ତୁ ସେହିଦିନରେ ସକଳଜଳ ଗଙ୍ଗାଜଳରତୁଲ୍ୟହୁଏ

ପ୍ରମାଣଂ ; —

ଅର୍ଦ୍ଧୋଦୟେତୁ ସଂପ୍ରାପ୍ତେ ସର୍ବଂଗଙ୍ଗା ସମଂଜଳଂ ।
ଇତି ସ୍କନ୍ଦପୁରାଣଂ ।

ବାରର ପ୍ରାଧାନ୍ୟ ହେତୁରୁ ଏହିଯୋଗ ରବିରେ ନକ୍ଷତ୍ରର ଯୋଗହେଲେ ହୁଏନାହିଁ ପ୍ରମାଣଂ—

ଦିବୈବ ଯୋଗଃ ଶସ୍ତୋଽୟଂ ନତୁରାତ୍ରୌ କଦାଚନ ।
ଇତି କୃତ୍ୟଚିନ୍ତାମଣୌ ।



ଅଥ ସଂକ୍ରାନ୍ତି ନିର୍ଣ୍ଣୟଃ ।

ତତ୍ରାଦୌ ସଂକ୍ରାନ୍ତ୍ୟା ନାମାନି ।

ମୃଗକର୍କଟସଂକ୍ରାନ୍ତୀ ଦ୍ୱେତୂଦଗ୍ ଦକ୍ଷିଣାୟନେ ।
ବିଷୁବତି ତୁଲାମେଷେ ଗୋଲମଧ୍ୟେ ତଥାପରେ ॥
ଧନୁର୍ମିଥୁନକନ୍ୟାସୁ ମୀନେଚ ଷଡଶୀତୟଃ ।
ବୃଷବୃଶ୍ଚିକକୁମ୍ଭେଷୁ ସିଂହେ ବିଷ୍ଣୁପଦୀ ସ୍ମୃତା ॥
ଇତି ଭବିଷ୍ୟ ମାତ୍ସ୍ୟ ଜ୍ୟୋତିଷେ ।

ସୂର୍ଯ୍ୟ ମେଷରାଶିରେ ଅବସ୍ଥିତକଲେ ଯେଉଁ ସଂକ୍ରାନ୍ତି ହୁଏ ତାହାର ନାମ ମହାବିଷୁ ; ଏହି ରୂପେ ବୃଷ , ସିଂହ , ବୃଶ୍ଚିକ ଓ କୁମ୍ଭରାଶିକୁ ଗମନକଲେ ବିଷ୍ଣୁପଦ; ଧନୁ , ମିଥୁନ , କନ୍ୟା ,

ଓ ମୀନ ଗମନରେ ଷଡଶୀତ ; କର୍କଟରେ ଯେଉଁ ସଂକ୍ରାନ୍ତି ତାହାର ନାମ ଦକ୍ଷିଣାୟନ , ତୁଲାରାଶି ଗତ ସଂକ୍ରାନ୍ତିର ନାମ ବଳଦକ୍ଷୁବ ଓମକରସଂକ୍ରାନ୍ତିର ନାମ ଉତ୍ତରାୟଣ ।

ନକ୍ଷତ୍ରଯୋଗେସଂକ୍ରାନ୍ତିର ନାମ ।

ମନ୍ଦା ମନ୍ଦାକିନୀ ଧ୍ୱାଙ୍କ୍ଷୀ ଘୋରଚୈବ ମହୋଦରୀ ।
ରାକ୍ଷସୀ ମିଶ୍ରିତା ପ୍ରୋକ୍ତା ସଂକ୍ରାନ୍ତିଃ ସପ୍ତଧା ନୃପ ॥
ମନ୍ଦାଧ୍ରୁବେଷୁ ବିଜ୍ଞେୟା ମୃଦୌ ମନ୍ଦାକିନୀ ତଥା ।
କ୍ଷିପ୍ରେ ଧ୍ୱାଙ୍କ୍ଷୀ ବିଜାନୀୟାଦୁଗ୍ରେ ଘୋର ପ୍ରକୀର୍ତ୍ତିତା ॥
ଚରେ ମହୋଦରୀ ଜ୍ଞେୟା କ୍ରୂରେ ରୁକ୍ଷେଷୁ ରାକ୍ଷସୀ ।
ମିଶ୍ରିତା ଚୈବ ବିଜ୍ଞେୟା ମିଶ୍ରିତର୍କ୍ଷେ ସୁସଂକ୍ରମେ ॥

ଉତ୍ତରାଷାଢ଼ା, ଉତ୍ତରଭାଦ୍ରପଦ , ଉତ୍ତରଫାଲ୍‌ଗୁନୀ ଓ ରୋହିଣୀ ନକ୍ଷତ୍ର ଯୁକ୍ତ ସଂକ୍ରାନ୍ତିରନାମ ମନ୍ଦା ; ଚିତ୍ରା , ଅନୁରାଧା , ମୃଗଶିର ଓ ରେବତୀଯୁକ୍ତ ସଂକ୍ରାନ୍ତିର ନାମ ମନ୍ଦାକିନୀ ; ପୁଷ୍ୟା , ଅଶ୍ୱିନୀ ଓ ହସ୍ତାନକ୍ଷତ୍ରରେ ସଂକ୍ରାନ୍ତିର ସଞ୍ଚାର ହେଲେ ତାହାର୍ ନାମ ଧ୍ୱାଙ୍କ୍ଷୀ; ପୂର୍ବାଷାଢ଼ା , ପୂର୍ବଫାଲ୍‌ଗୁନୀ , ପୂର୍ବଭାଦ୍ରପଦ, ମଘା ଓ ଭରଣୀଯୁକ୍ତ ସଂକ୍ରାନ୍ତିର୍‌ନାମ ଘୋର ; ସ୍ୱାତି , ପୁନର୍ବସୁ , ଶ୍ରବଣା , ଧନିଷ୍ଠା , ଶତଭିଷା ନକ୍ଷତ୍ରରେ ସଂକ୍ରାନ୍ତିର ସଂକ୍ରମଣ ହେଲେ ତାହାର ନାମ ମହୋଦରୀ ; ଅଶ୍ଳେଷା , ଆର୍ଦ୍ରା , ଜ୍ୟେଷ୍ଠା ଓ ମୂଳାରେ ସଂକ୍ରମଣ ହେଲେ ତାହାର ନାମ ରାକ୍ଷସୀ; ଆଉ କୃତ୍ତିକା ଓ ବିଶାଖାରେ ସଂକ୍ରମଣ ହେଲେ ତାହାର ନାମ ମିଶ୍ରିତା ; ଆଉ ମନ୍ଦା, ମନ୍ଦାକିନୀ , ଧ୍ୱାଙ୍କ୍ଷୀ , ଘୋର ମହୋଦରୀ, ରାକ୍ଷସୀ ଓ ମିଶ୍ରିତା ଏହି କେତେକପ୍ରକାର ସଂକ୍ରାନ୍ତିର ପୁଣ୍ୟକାଳ କ୍ରମାନ୍ୱୟରେ ତିନି , ଚାରି , ପାଞ୍ଚ , ସାତ , ଆଠ , ନଅ , ଓ ବାର ଦଣ୍ଡ; ଅର୍ଥାତ୍ ମନ୍ଦାରେ ତିନିଦଣ୍ଡ , ମନ୍ଦାକିନୀରେ ଚାରି

ଦଣ୍ଡ, ଧ୍ୟାନ୍ତ୍ରୀରେ ପାଞ୍ଚଦଣ୍ଡ, ଧୋଗ୍‌ରେ ସାତଦଣ୍ଡ, ମହୋଦ-ଘିରେ ଆଠଦଣ୍ଡ, ଗ୍ରକ୍ଷସୀରେ ନଅଦଣ୍ଡ, ଓ ମିଶ୍ରିତାରେ ଦ୍ୱାଦଶ ଦଣ୍ଡକାଳ ପାରମାର୍ଥିକ କର୍ମ ସକାଶେ ପୁଣ୍ୟକାଳ ।

[ ଅଥ ବିବାସଂକ୍ରମଣେ ପୁଣ୍ୟତର କାଳ ବର୍ଣ୍ଣନଂ ]

ଅହ୍ନି ସଂକ୍ରମଣେ ପୁଣ୍ୟମହଃ କୃତ୍ସ୍ନଂ ପ୍ରକୀର୍ତ୍ତିତଂ ।
ଇତି କାମଭବାହନୋଽପି କାଲବିବେକଃ ।

ଦିବା ସଂକ୍ରମଣରେ ପୂର୍ବୋକ୍ତ ମହାବିଷୁବ ଇତ୍ୟାଦିର ସଂକ୍ରାନ୍ତିର ସମସ୍ତ ଦିବସ ପୁଣ୍ୟକାଳ ।

ଯାବଦ୍ୱିଂଶକଳା ଭୁକ୍ତା ତଦ୍ଧି ଶ୍ରେୟଂ ଦେଶ୍ଚେତ୍ ଯୁଗେ ।
ଜାରଂଶେ ଭିଷ୍ଟରେ ଦୃଷ୍ଟେ ଦିନାନ୍ତଂ ଦକ୍ଷିଣାୟନେ ।
ଦେବୀ ପୁରାଣଂ ।

ଉତ୍ତରାୟଣ ସଂକ୍ରାନ୍ତିର ପୁଣ୍ୟତରକାଳ ସଂକ୍ରାନ୍ତି ପରେ ୨୦ ଦଣ୍ଡ ଆଉ ଦକ୍ଷିଣାୟନ ସଂକ୍ରାନ୍ତିର ପୂର୍ବ ୩୦ ଦଣ୍ଡ ଅର୍ଥାତ୍ ସଂକ୍ରାନ୍ତି ସଞ୍ଚାରହେବାର ପୂର୍ବେ ୩୦ ଦଣ୍ଡ ।

ପୂର୍ଣ୍ଣାୟାଂ ବିଷ୍ଣୁପଦ୍ୟାଞ୍ଚ ପ୍ରାକ୍‌ପଶ୍ଚାଦପି ଷୋଡ଼ଶଃ ।
ଇତି ଯାବାଲ ବୃହଦ୍‌ବଶିଷ୍ଠେତ ।

ବିଷ୍ଣୁପଦୀ ସଂକ୍ରାନ୍ତିର ପୁଣ୍ୟତରକାଳ ସଂକ୍ରାନ୍ତିର ସଞ୍ଚାରହେବା ପୂର୍ବେ ଷୋଡଶଦଣ୍ଡ ଓ ପରେ ଷୋଡଶଦଣ୍ଡ ।

ଷଡଶୀତି ମୁଖେଽତୀତେ କୃତ୍ୱେବ ବିଷୁବଦ୍ୱୟେ ।
ଇତି ଦେବୀ ପୁରାଣଂ ।

ଷଡଶୀତି ମହାବିଷୁବ ଓ ଜଳବିଷୁବ ସଂକ୍ରାନ୍ତିରେ ସଂକ୍ରମଣ ପରେ ଦିନାର୍ଦ୍ଧ ପୁଣ୍ୟତର କାଳ ।

—୦ ୩ ※ ୧ ୦—

[ ଅଥ ଗ୍ରହ ସଂକ୍ରାନ୍ତି ବର୍ଣ୍ଣନଂ ]

ଅର୍ଦ୍ଧରାତ୍ରେ ତୁସଂପୂର୍ଣ୍ଣେ ଦିବାପୁଣ୍ୟମନାଗତଂ ।
ଅର୍ଦ୍ଧରାତ୍ରବ୍ୟତୀତେତୁ ଦିନେଷ୍ୱଂ ଚୃପରେ୍ଽହନି ।
ଦେବଳ ଧୃଗ୍ ଣଂ ।

ଯଦି ଅର୍ଦ୍ଧରାତ୍ର ପୂର୍ବେ ସଂକ୍ରାନ୍ତିର ସଞ୍ଚାର ହୁଏ ତେବେ ଅନାଗତ ଅର୍ଥାତ୍ ସେହିଦିନର ପଶ୍ଚାଦ୍ଧି ପୁଣ୍ୟକାଳ । ଆଉ ଅର୍ଦ୍ଧରାତ୍ରର ପରେ ସଞ୍ଚାର ହେଲେ ପରଦିବସର ପୂର୍ବାର୍ଦ୍ଧି ପୁଣ୍ୟକାଳ ।

ଯଦି ପୂର୍ବରାତ୍ରିର ଶେଷକଳାର ପୂର୍ବେ ରବି ସଂକ୍ରାନ୍ତିର ସଞ୍ଚାର ହୁଏ ତେବେ ପୂର୍ବଦିନର ଶେଷାର୍ଦ୍ଧି ପୁଣ୍ୟ କାଳ । ପ୍ରମାଣଂ ଯଥା,-

କଳାନ୍ୟୂନାର୍ଦ୍ଧ ରାତ୍ରେତୁ ଯଦି ସଂକ୍ରମଣଂ ଭବେତ୍ ।
ତଦହ୍ନଃ ପୁଣ୍ୟମିଚ୍ଛନ୍ତି ଗାର୍ଗ୍ୟ ଗାଳବ ଗୋତମାଃ ॥

ଆଉ ଯଦି ପରରାତ୍ରିର ପ୍ରଥମକଳାର ପର ସଂକ୍ରମଣ ହୁଏ ତେବେ ପରଦିନର ପୂର୍ବାର୍ଦ୍ଧି ପୁଣ୍ୟକାଳ । କଳା ଶବ୍ଦାର୍ଥ ଦଣ୍ଡ । ପ୍ରମାଣଂ, ଯଥା-

ଅର୍ଦ୍ଧରାତ୍ରେ କଳାଧିକେ ଯଦା ସଂକ୍ରମତେ ରବିଃ ।
ତଦୋତ୍ତରଦିନଂ ଗ୍ରାହ୍ୟଂ ସ୍ନାନଦାନ ଜପାଦିଷୁ ॥

ଯଦି ସମ୍ପୂର୍ଣ୍ଣ ଅର୍ଦ୍ଧରାତ୍ରିରେ ସଞ୍ଚାର ହୁଏ ତେବେ ପୂର୍ବଦିନରେ ଦୁଇପ୍ରହର ଓ ପରଦିନର ଦୁଇପ୍ରହର ପୁଣ୍ୟକାଳ ହୁଏ ପ୍ରମାଣଂ ଯଥା,—

ରାତ୍ରିର ମଧ୍ୟମକଳାଦ୍ୱୟକୁ ସମ୍ପୂର୍ଣ୍ଣ ଅର୍ଦ୍ଧରାତ୍ରି କହି । କିନ୍ତୁ ଏହି ସ୍ଥଳରେ ଆଉ ଏକ ନିୟମ ଏହିଯେ ମକର ଓ କର୍କଟରାଶିରେ ଯେ ସଂକ୍ରମଣ ହେବ ତହିଁରେ ଏହି ନିୟମ ଘଟିବ ନାହିଁ । ତନ୍ମଧ୍ୟରେ ଅନ୍ୟ ନିୟମ ଅଛି ପ୍ରମାଣଂ ଯଥା, —

ମିଥୁନାତ୍ କର୍କିସଂକ୍ରାନ୍ତି ଯଦିସ୍ୟାଦଂଶୁମାଲିନଃ ।
ପ୍ରଦୋଷେ ବା ନିଶୀଥେବା କୁର୍ଯ୍ୟାଦହନି ପୂର୍ବତଃ ॥
ଇତି କାଲମାଧବୀୟେ ଭବିଷ୍ୟୋତ୍ତରଂ ।

ଯଦି ଦକ୍ଷିଣାୟନ ସଂକ୍ରାନ୍ତିରେ ସମ୍ପୂର୍ଣ୍ଣ ଅର୍ଦ୍ଧରାତ୍ରରେ କି ପ୍ରଦୋଷ-

ରେ ସଂକ୍ରମଣହୁଏ ତେବେ ପୂର୍ବଦିନର ଶେଷାର୍ଦ୍ଧିପୁଣ୍ୟକାଳ ।

କାମ୍ୟାର୍କିକନ୍ତୁ ପରୋଦ୍ଧେ ର୍ଦୃଷ୍ଟଂସଂକ୍ରମତେରବ୍ଦଃ ।
ପ୍ରଭାତେ ବା ର୍ଦ୍ଧରାତ୍ରେବା ସ୍ନାନଂ କୁର୍ଯାଦ୍ ପରେଽହନି ॥
କାଲମାଧବୀୟ ଭବିଷ୍ୟୋତ୍ତରଂ ।

ଉତ୍ତରାୟଣ ସଂକ୍ରାନ୍ତିର ପକ୍ଷାର ଯଦ୍ରାତ୍ରିରେ କି ସଂପୂର୍ଣ୍ଣ ଅର୍ଦ୍ଧରାତ୍ରେରେ ହୁଏ ତେବେ ପରଦିନର ପୂର୍ବାର୍ଦ୍ଧ ପୁଣ୍ୟକାଳ । ଏହିସମୟରେ ସ୍ନାନାଦ୍ କରିବ ।

ସଂକ୍ରାନ୍ତି ଦିବସର ଯେଉଁତିଥି ସମ୍ପୂର୍ଣ୍ଣ ଅର୍ଦ୍ଧରାତ୍ରି ସଂକ୍ରମଣସମୟରେ ଯଦି ସେହିତିଥିଥାଏ ତେବେସେହିଦିନର ଶେଷାର୍ଦ୍ଧ ପୁଣ୍ୟ କାଳ । ପ୍ରମାଣଂ ଯଥା, —

ଆଦୌ ପୁଣ୍ୟଂ ବିଜାନୀୟାଦ୍ଧସ୍ୟ ତିଥ୍ୟାତଥିଭିବେତ୍ ।
ଦେବୀପୁରାଣଂ ।

ସନ୍ଧ୍ୟାସଂକ୍ରମଣରେ ଯେତେବେଳେ ଦିନଦଣ୍ଡରେ ସଂକ୍ରମଣହୁଏ ସେତେବେଳେ ସେହିଦିନ ପୁଣ୍ୟକାଳ, ଆଉ ରାତ୍ରି ଦଣ୍ଡରେ ସଂକ୍ରମଣହେଲେ ରାତ୍ରିରଯେଉଁ ବ୍ୟବସ୍ଥା ଉକ୍ତହୋଇଅଛି ତଦନୁଯାୟୀ ବ୍ୟବସ୍ଥାହେବ । ସ୍ମାର୍ତ୍ତଭଟ୍ଟାଚାର୍ଯ୍ୟ ଏହିସ୍ଥଳରେ ଏହିରୂପବ୍ୟବସ୍ଥା ଦେଇଅଛନ୍ତି । ପ୍ରମାଣଂ ଯଥା;—

ଅର୍ଦ୍ଧରାତ୍ରେ ତୁସମ୍ପୂର୍ଣ୍ଣେ ଯଦାସଂକ୍ରମତେ ରବିଃ ।
ପ୍ରାହୁର୍ଦ୍ଦିନଦ୍ୱୟଂପୁଣ୍ୟଂ ତ୍ୟକ୍ତ୍ୱା ମକରକର୍କଟୌ ।
ସମ୍ପୂର୍ଣ୍ଣେ ଚାର୍ଦ୍ଧରାତ୍ରେଚ ରାତ୍ରିମଧ୍ୟମ କାଲୟୋଃ ॥
ସନ୍ଧ୍ୟାସଂକ୍ରମଣେତୁ ଦିନଦଣ୍ଡେ ଦିନସ୍ୟ,
ରାତ୍ରିଦଣ୍ଡେ ରାତ୍ରେର୍ବ୍ୟବସ୍ଥା ॥

ଇତି ସ୍ମାର୍ତ୍ତଃ ।

— ✲ ◯ ✲ —

ଅଥ ଗ୍ରହଣଂ ।

ଭସ୍ଚି ପାଦାନ୍ତରେ ଗୃହ୍ନୋଃ କେତୋର୍ବା ଙ୍ ସ୍ଥିତୋରଵିଃ ।
ଚତୁର୍ଷ୍ଟାଦାନ୍ତରେ ଚନ୍ଦ୍ର ସ୍ତଦା ଙ୍ଭ୍ରବ୍ୟତେଗ୍ରହଃ ॥
ଇତି ଜ୍ୟୋତିଷେ ।

ଯେଉଁ ନକ୍ଷତ୍ରର ନ ପାଦମଧ୍ୟରେ ଗ୍ରହ୍ମ ବା କେତୁ ଥାନ୍ତି ଅର୍ଥାତ୍ ଯେଉଁନକ୍ଷତ୍ରରେ ଗ୍ରହ୍ମ ବା କେତୁ ଥାନ୍ତି ତାହାର ନ ପାଦାଭ୍ୟନ୍ତରରେ ରବିଥିଲେ ସୂର୍ଯ୍ୟଗ୍ରହଣ ସମ୍ଭବନ୍ତିଏ ଆଉ ଏହିପ୍ରକାରରେ ଯଦି ଚତୁଷ୍ପାଦାଭ୍ୟନ୍ତରରେ ଚନ୍ଦ୍ରଥାନ୍ତି ତାହାହେଲେ ଚନ୍ଦ୍ରଗ୍ରହଣ ସମ୍ଭବନ୍ତିଏ

ଅନ୍ୟଚ୍ଚ ।

ଯସ୍ମିନ୍ନୃକ୍ଷେ ରବିସ୍ତସ୍ୟାଶ୍ଚତୁର୍ଦ୍ଦଶଗତଃ ଶଶୀ ।
ପୂର୍ଣ୍ଣିମା ପ୍ରତିପତ୍ସନ୍ଧୌ ଗୃହ୍ମଣା ଗ୍ରସ୍ୟତେଶଶୀ ॥
କୃଷ୍ଣପକ୍ଷେ ତୃତୀୟାୟାଂ ମାସର୍କ୍ଷଂ ଯଦି ଜାୟତେ ।
ତତସ୍ତ୍ରୟୋ ଦଶେ ସୂର୍ଯ୍ୟେ ଗୃହ୍ମଣା ଗ୍ରସ୍ୟତେ ରବିଃ ॥
ଇତି ଜ୍ୟୋତିଷେ ।

ଯେଉଁ ନକ୍ଷତ୍ରରେ ରବିଥାନ୍ତି ତାର ଚତୁର୍ଦ୍ଦିଶ ନକ୍ଷତ୍ରରେ ଯଦି ଚନ୍ଦ୍ରଥାନ୍ତି ତାହାହେଲେ ପୂର୍ଣ୍ଣିମା ଓ ପ୍ରତିପଦ୍ର ମିଳନକାଳରେ ଚନ୍ଦ୍ରଗ୍ରହଣହୁଏ । ଯେଉଁ ମାସର ଯେଉଁ ନକ୍ଷତ୍ର ସେହିନକ୍ଷତ୍ର ଯଦି ସେହିମାସର ତୃତୀୟାରେ କୃଷ୍ଣପକ୍ଷରେ ଥାନ୍ତି ଏବଂ ସେହିମାସ ଘଟକ ନକ୍ଷତ୍ର ଠାରୁ ତ୍ରୟୋଦଶ ନକ୍ଷତ୍ରରେ ଯଦି ସୂର୍ଯ୍ୟଥାନ୍ତି ତେବେ ସୂର୍ଯ୍ୟ ଗ୍ରହଣ ହୁଏ ।

ଗ୍ରହଣେ ଚୂଡାମଣିଯୋଗଃ ।

ସୂର୍ଯ୍ୟଗ୍ରହଃ ସୂର୍ଯ୍ୟବାରେ ସୋମେ ସୋମଗ୍ରହୋଭବେତ୍ ।
ଚୂଡ଼ାମଣିରୟଂ ଯୋଗ ସ୍ତତ୍ରାନନ୍ତ୍ୟ ଫଳଂ ସ୍ମୃତଂ ॥
ଇତି ଗାରୁଡ଼େ ।

ଯଦି ସୂର୍ଯ୍ୟଗ୍ରହଣ ରବିବାରରେ ଓ ଚନ୍ଦ୍ରଗ୍ରହଣ ସୋମବାରରେ ହୁଏ ତେବେ ତାହାକୁ ଚୂଡ଼ାମଣିଯୋଗକହନ୍ତି । ତହିଁରେସ୍ନାନଦାନକଲେ ଅତ୍ୟଧିକଫଳ ।

ସାମାନ୍ୟତଃ ଗ୍ରହଣହୋଇଲେ ସ୍ନାନକରିବ । ପ୍ରମାଣଂ- ।

ସଂକ୍ରମେ ଗ୍ରହଣେଚୈବ ନସ୍ନାୟାଦ୍ୟସ୍ତୁ ମାନବଃ ।
ସପ୍ତ ଜନ୍ମ ସୁକୁଷ୍ଠୀସ୍ୟାତ୍ ଦୁଃଖଭାଗୀଚ ସର୍ବଦା ।
ଇତି ବୃହଦ୍ବଶିଷ୍ଠଃ ।

ସଂକ୍ରାନ୍ତି ଓ ଗ୍ରହଣରେ ଯେଉଁ ବ୍ୟକ୍ତି ସ୍ନାନଦାନାଦିନକରେ ସେ- ସପ୍ତଜନ୍ମ କୁଷ୍ଠରୋଗଗ୍ରସ୍ତ ଏବଂ ସର୍ବଦା ଦୁଃଖୀହୁଏ । କିନ୍ତୁ ଅଶୌ- ଚରେ କେବଳମାତ୍ର ସ୍ନାନକରିବ- ଦାନାଦି କରିବନାହିଁ ପ୍ରମାଣଂ ଯଥା

ସୂତକେ ମୃତକେଚୈବ ନଦୋଷୋରାହୁଦର୍ଶନେ ।
ସ୍ନାନମାତ୍ରନ୍ତୁ କର୍ତ୍ତବ୍ୟଂ ଦାନଶ୍ରାଦ୍ଧବିବର୍ଜିତଂ ॥
ସମ୍ବତ୍ସରପ୍ରଦୀପେ ଗର୍ଗାବାକ୍ୟାବଳୀଃ ।

ଜନନାଶୌଚ ଓ ମୃତାଶୌଚରେ ଗ୍ରହଣ ଦର୍ଶନ ଓ ସ୍ନାନକରିବ ଦାନ ଓ ଶ୍ରାଦ୍ଧକରିବନାହିଁ ପରନ୍ତୁ ଯେଉଁ ବ୍ୟକ୍ତି ଗ୍ରହଣ ଦର୍ଶନ କରିବାକୁନାହିଁ ସେବ୍ୟକ୍ତି ଗ୍ରହଣମୁକ୍ତିହେଲେ ସ୍ନାନକରିବ ।

ଅନ୍ୟଚ ।

ସର୍ବଂ ଭୂମିସମଂ ଦାନଂ ସର୍ବେବ୍ୟାସ ସମାଦ୍ୱିଜାଃ ।
ସର୍ବଂଗଙ୍ଗାସମଂତୋୟଂ ଗ୍ରହଣେନାତ୍ର ସଂଶୟଃ ॥
ଇତି ବ୍ୟାସବଚନଂ ।

ଗ୍ରହଣକାଳରେ ଯେଯାହାଦାନକରେ ତାହା ଭୂମିଦାନର ସମା- ନହୁଏ ଯେ କୌଣସି ବ୍ରାହ୍ମଣହେଉ ବ୍ରାହ୍ମଣମାନେଇ ବ୍ୟାସତୁଲ୍ୟ, ଯେ କୌଣସି ଜଳରେ ସ୍ନାନକରେ ଗଙ୍ଗାସ୍ନାନର ସମାନ ଫଳହୁଏ, ଏଥିରେ କୌଣସି ସଂଶୟନାହିଁ । ଅତଏବ ଗ୍ରହଣସମୟରେ ଶ୍ରାଦ୍ଧ

କର୍ ଅବଶ୍ୟ କର୍ତ୍ତବ୍ୟ ।

ସର୍ବସ୍ୱେନାପି କର୍ତ୍ତବ୍ୟଂ ଶ୍ରାଦ୍ଧଂ ବୈ ରାହୁଦର୍ଶନେ ।
ଅକୁର୍ବାଣସ୍ତୁ ତଚ୍ଛ୍ରାଦ୍ଧଂ ପଙ୍କେ ଗୌରିବ ସୀଦତି ॥
ଋଷ୍ୟଶୃଙ୍ଗ ଶାତାତପୌ ।

ସମସ୍ତଙ୍କର ଗ୍ରହଣସମୟରେ ଶ୍ରାଦ୍ଧକର୍ କର୍ତ୍ତବ୍ୟ ଯଦି ସେ ସମୟରେ ଶ୍ରାଦ୍ଧ ନକରେ ତେବେ ଘୋର ନରକରେ ପତିତ ହୁଏ । ଅତଏବ ଗ୍ରହଣସମୟରେ ଶ୍ରାଦ୍ଧକର୍ ଅବଶ୍ୟ କର୍ତ୍ତବ୍ୟ ।

ଅନ୍ୟଚ

ଆଦିତ୍ୟେହ୍ନି ସଂକ୍ରାନ୍ତୌ ସୂର୍ଯ୍ୟଚନ୍ଦ୍ରଗ୍ରହେ ତଥା ।
ପାରଣଞ୍ଚୋପବାସଞ୍ଚ ନକୁର୍ଯ୍ୟାତ୍ପୁତ୍ରବାନ୍ଗୃହୀ ॥

ରବିବାର, ସଂକ୍ରାନ୍ତି ଏବଂ ସୂର୍ଯ୍ୟ ଓ ଚନ୍ଦ୍ରଗ୍ରହଣସମୟରେ ପୁତ୍ରବାନ୍ ଗୃହୀ ଉପବାସ ଓ ପାରଣାଦି କରିବେ ନାହିଁ ଅନ୍ୟାନ୍ୟ ସକଳେ ଉପବାସ କରିବେ । କିନ୍ତୁ ପୁତ୍ରବାନ୍ଗୃହୀର ପକ୍ଷେ ଗ୍ରହଣ ପୂର୍ବରେ ଭୋଜନ ନିଷେଧ ଅଛି । ତଦ୍ଯଥା; —

ସୂର୍ଯ୍ୟଗ୍ରହେ ତୁ ନାଶ୍ନୀୟାତ୍ ପୂର୍ବଂ ଯାମଚତୁଷ୍ଟୟଂ ।
ଚନ୍ଦ୍ରଗ୍ରହେ ତୁ ଯାମାଂସ୍ତ୍ରୀନ୍ ବାଲବୃଦ୍ଧାତୁରୈର୍ବିନା ॥

ସୂର୍ଯ୍ୟଗ୍ରହଣର ପୂର୍ବେ ଚାରିଯାମ ଅର୍ଥାତ୍ ଚାରିପ୍ରହର ଆଉ ଚନ୍ଦ୍ରଗ୍ରହଣର ପୂର୍ବେ ତିନିଯାମ ଅର୍ଥାତ୍ ତିନିପ୍ରହର କାଳ ଆହାର କରିବେ ନାହିଁ । ବାଳ ବୃଦ୍ଧ ଓ ଆତୁର ଏମାନଙ୍କ ପକ୍ଷରେ ଏ ନିୟମ ନୁହେ ।

ଚନ୍ଦ୍ରସ୍ୟ ଗ୍ରସ୍ତୋଦୟେ ବିଶେଷମାହ ବୃଦ୍ଧବଶିଷ୍ଠଃ ।
ଗ୍ରସ୍ତୋଦୟେ ବିଧୋଃ ପୂର୍ବଂ ନାହର୍ଭୋଜନମାଚରେତ୍ ।

ଯଦି ଚନ୍ଦ୍ରଙ୍କର ଗ୍ରସ୍ତୋଦୟ ହୁଏ ତେବେ ପୂର୍ବଦିନ ଭୋଜନ କରିବେ ନାହିଁ । ଅର୍ଥାତ୍ ଯେଉଁଦିନରେ ଗ୍ରସ୍ତୋଦୟ ସେହି ଦିନ ଭୋଜନ

କରିବନାହିଁ ।

ବାଲ ବୃଦ୍ଧାତୁର ବିଷୟେ ବାଚସ୍ପତି ମିଶ୍ରଧୃତଂ ।
ମାର୍କଣ୍ଡେୟ ବଚନଂ ।

ସାୟାହ୍ନେ ଗ୍ରହଣଂ ଚେତ୍ସ୍ୟାଦପରାହ୍ନେ ନ ଭୋଜନଂ ।
ଅପରାହ୍ନେ ନ ମଧ୍ୟାହ୍ନେ ମଧ୍ୟାହ୍ନେ ଚେନ୍ନସଙ୍ଗବେ ॥
ସଙ୍ଗବେ ଗ୍ରହଣଂ ଚେତ୍ସ୍ୟାତ୍ ନପୂର୍ବ୍ବାଂ ଭୋଜନକ୍ରିୟାଂ ।

ଯଦି ସନ୍ଧ୍ୟାସମୟରେ ଗ୍ରହଣହୁଏ ତେବେ ଅପରାହ୍ନେ ଭୋଜନକରିବ ନାହିଁ । ଅପରାହ୍ନରେ ଅର୍ଥାତ୍ ଦିବାର ଶେଷଭାଗରେ ଗ୍ରହଣହେଲେ ପ୍ରାତଃକାଳରେ ଭୋଜନକରିବନାହିଁ ଏବ ପ୍ରାତଃକାଳରେ ଗ୍ରହଣହେଲେ ତାହାର ପୂର୍ବ୍ବେ ଭୋଜନକରିବନାହିଁ । ଆଉ ଯଦି ସୂର୍ଯ୍ୟ ଗ୍ରସ୍ତହୋଇ ଅସ୍ତହୁଅନ୍ତି ତେବେ ପରଦିନରେ ସୂର୍ଯ୍ୟ ନଦେଖି ଭୋଜନକରିବନାହିଁ । ପ୍ରମାଣଂ — ( ମୁକ୍ତିଂ ଦୃଷ୍ଟ୍ୱା ତୁ ଭୁଞ୍ଜୀତ ସ୍ନାନଂ କୃତ୍ୱାପରେ ହନୀତ ) ଯଦି ଅର୍ଦ୍ଧରାତ୍ରରେ ଚନ୍ଦ୍ରଗ୍ରହଣହୁଏ ତେବେ ସାୟଂକାଳରେ ଭୋଜନ କରିବନାହିଁ ।

ପ୍ରମାଣଂ ବୃହନ୍ନାରଦୀୟେ ।

ଅର୍ଦ୍ଧରାତ୍ରବ୍ୟତୀତେତୁ ଯଦାଚନ୍ଦ୍ର ଗ୍ରହୋଭବେତ୍ ।
ସାୟଂତନ ନଭୁଞ୍ଜୀତ ନତୁ ପ୍ରାତର ଭୋଜନଂ ॥

ଯଦି ମେଘାବୃତହେତୁ ଦୃଶ୍ୟନହୁଏ ତେବେ ମୋକ୍ଷକାଳ ଅନୁମାନକରି ଭୋଜନ କରିବ ପ୍ରମାଣଂ ଯଥା;—

ମେଘମାଳାଦି ଦୋଷେଣ ଯଦି ମୁକ୍ତି ର୍ନଦୃଶ୍ୟତେ ।
ଆକଳୟ୍ୟତୁ ତଂକାଳଂ ଭୁଞ୍ଜୀତ ସ୍ନାନପୂର୍ବ୍ବକଂ ।
ଇତି ଶୁଦ୍ଧି ତତ୍ତ୍ୱାର୍ଣ୍ଣବଧୃତଂ ।

ଗ୍ରସ୍ତୋଦୟପରେ ତିନଦିନ ବେଦଶାସ୍ତ୍ର ପାଠକରିବନାହିଁ ( ତ୍ର୍ୟହଂ ନକୀର୍ତ୍ତୟେ ଦ୍ବ୍ରହ୍ମ ରାଜ୍ଞୋ ରାହୋଶ୍ଚ ସୂତକେ ) ମିତାକ୍ଷର

ରେ ଏହିପ୍ରମାଣଅଛି ।



ଅଥ ଦର୍ଶଶ୍ରାଦ୍ଧକାଳ ।

ପ୍ରତିମାସର ଅମାବସ୍ୟାରେ ଅଷ୍ଟକାଦଯ୍ତରେ ସକଳେ ଶ୍ରାଦ୍ଧକ-ରିବେ, ନିରଗ୍ନିକମାନେ ଅପର ପକ୍ଷର ଚତୁର୍ଦ୍ଦଶୀ ଭିନ୍ନ ଅନ୍ୟାନ୍ୟ ସକଳତିଥିରେ ଶ୍ରାଦ୍ଧକରିବେ, ସାଗ୍ନିକମାନେ ସକଳ ତିଥିରେ କରିପାରନ୍ତି । ଅମାବସ୍ୟାର ପ୍ରକାରଭେଦରେ ଅର୍ଥାତ୍ କ୍ଷୀଣାସ୍ମୃ-ତା ଓ ବର୍ଦ୍ଧିମାନାଭେଦରେ ସାଗ୍ନିକ ଓ ନିରଗ୍ନିକ ସମସ୍ତେ ଶ୍ରାଦ୍ଧକ-ରିବାକୁ ପାରିବେ । ଯଦି ପ୍ରତିଅମାବସ୍ୟାରେ ଶ୍ରାଦ୍ଧକରିନପାରନ୍ତି ତେବେ ଜ୍ୟେଷ୍ଠ, ଆଶ୍ୱିନ ଓ ଫାଲ୍ଗୁନ ଏହି କେତେକ ମାସର ଅମାବସ୍ୟାରେ ଅବଶ୍ୟ ଶ୍ରାଦ୍ଧକରିବେ ।

କନ୍ୟା କୁମ୍ଭ ବୃଷସ୍ଥାର୍କେ କୃଷ୍ଣପକ୍ଷେତ ସର୍ବଦା ।

ଇହାର ମହାବାକ୍ୟରେ ସୌରମାସର ଉଲ୍ଲେଖ କରିବ ( ହବା-ହାଦୌସ୍ତୁ ତିଃସୌରଃ ) ମଳମାସର ଅମାବସ୍ୟାରେ ଶ୍ରାଦ୍ଧସମସ୍ତଙ୍କ ପକ୍ଷେ ନିଷେଧଅଛି । ପ୍ରମାଣଂ ଯଥା;—

ଏକରାଶିସ୍ଥିତେ ସୂର୍ଯ୍ୟେ ଯଦି ଦର୍ଶଦ୍ୱୟଂ ଭବେତ୍ ।
ଦର୍ଶଶ୍ରାଦ୍ଧଂ ତଦାଦୌସ୍ୟାନ୍ନପରନ୍ ମଳମ୍ଳୁଚେ ॥

ଇତି ସମ୍ବତ୍ସରପ୍ରଦୀପ ସ୍ମୃତିରତ୍ନାକରଯ୍ୟୋଃ ।

ଯଦି ଏକରାଶିରେ ସୂର୍ଯ୍ୟଥାଇ ଦୁଇଅମାବସ୍ୟାହୁଏ ସେହିମାସକୁ ମଳମାସକହି । ଏହିମାସର ଅମାବସ୍ୟାରେ ଶ୍ରାଦ୍ଧକରିବନାହିଁ । ଶୁ-ଦ୍ଧମାସରେ କରିବ । ଆଉଜାତକର୍ମ ନିମିତ୍ତ ଯଦି ମଳମାସରେ କରିବାକୁହୁଏ ତେବେ ତହିଁରେ ମଳମାସରେ ତାଦୃଶ ଦୋଷାଦ-ହିନହେ ପ୍ରମାଣଂ ଯଥା;—

ଜାତକର୍ମଣି ଯଚ୍ଛ୍ରାଦ୍ଧଂ ଦର୍ଶଶ୍ରାଦ୍ଧଂ ତଥୈବଚ ।

ମଲମାସେପି ତତ୍କାର୍ଯ୍ୟଂ ବ୍ୟାସସ୍ୟବଚନଂ ଯଥା ॥

ଅନ୍ୟଚ୍ଚ

ଅଶ୍ୱଯୁକ୍ କୃଷ୍ଣପକ୍ଷେତୁ ଶ୍ରାଦ୍ଧଂ କୁର୍ଯ୍ୟା ଦିନେ ଦିନେ ।
ତ୍ରିଭାଗହୀନଂ ପକ୍ଷଂବା ତ୍ରିଭାଗନ୍ତ୍ୱର୍ଦ୍ଧମେବବା ॥

ବ୍ରହ୍ମ ପୁରାଣଂ ।

ଆଶ୍ୱିନର କୃଷ୍ଣପକ୍ଷରେ ପ୍ରତିଦିନଶ୍ରାଦ୍ଧକରିବ । ଅଶକ୍ତହେଲେ ପକ୍ଷକୁ ତ୍ରିଭାଗକରି ପ୍ରଥମଭାଗବ୍ୟତୀତ ଅର୍ଥାତ୍ ଷଷ୍ଠୀଠାରୁ ଅମାବସ୍ୟାପର୍ଯ୍ୟନ୍ତ ଆଉ ଏକାଦଶୀଠାରୁ ଅମାବସ୍ୟାପର୍ଯ୍ୟନ୍ତ ଆଉ ତ୍ରୟୋଦଶୀଠାରୁ ଅମାବସ୍ୟାପର୍ଯ୍ୟନ୍ତ ଶ୍ରାଦ୍ଧକରିବ ଏହିମାସରେ ମଲମାସ ପଡ଼ିଲେ ଶ୍ରାଦ୍ଧକରି କରିବ୍ୟନାହିଁ ।

---

ଅଥମଘା ତ୍ରୟୋଦଶୀ ଶ୍ରାଦ୍ଧଂ

ମଘାତ୍ରୟୋଦଶୀ ଶ୍ରାଦ୍ଧରିବିଷୟ ତ୍ରୟୋଦଶୀସ୍ଥଳରେ ବର୍ଣ୍ଣିତ ଅଛି ।

---

ଅଥ ନବାନ୍ନ ଶ୍ରାଦ୍ଧଂ

ନବୋଦକେ ନବାନ୍ନେଚ ଗୃହପ୍ରଚ୍ଛାଦନେତଥା ।
ପିତରଃସ୍ପୃହୟନ୍ତ୍ୟନ୍ନ ମଷ୍ଟକାସୁ ମଘାସୁଚ ॥

ନବୋଦକ, ନବାନ୍ନ, ଗୃହପ୍ରବେଶ, ଅଷ୍ଟକା, ଓ ମଘାତ୍ରୟୋଦଶୀରେ ପିତୃଗଣଙ୍କୁ ଅନ୍ନଦେଇ ଶ୍ରାଦ୍ଧକରିବ । ନବୋଦକରେ ଅର୍ଥାତ୍ ବର୍ଷାରଉପକ୍ରମରେ । ଅଷାଢ଼ମାସରେ ଏଶ୍ରାଦ୍ଧକରଣୀୟ । ପ୍ରମାଣଂ — ( ଆର୍ଦ୍ରାଦିତୋଦ୍ୱଶାଖାନ୍ତଂ ରବିଣ୍ଡରେଣ ବର୍ଷିତ ) ଆର୍ଦ୍ରାସ୍ଥ ରବିରେ ଶ୍ରାଦ୍ଧକରିବ ।

ପ୍ରାବୃଟ୍କାଲେସମାୟାତେ ରୌଦ୍ରବୃକ୍ଷଗତେରବୌ ।

ନାଡ଼ୀବେଧସମାଯୋଗେ ଜଲଯୋଗଂବଦାମ୍ୟହଂ ।
ଇତି ରୁଦ୍ରଯାମଲେ ।

ବର୍ଷାକାଳଉପସ୍ଥିତହେଲେ ଆଷାଢ଼ମାସର ଶୁକ୍ଳ ୪୦ ଦଣ୍ଡପରେ ୧୩ ଦିନ ୬୦ ଦଣ୍ଡପର୍ଯ୍ୟନ୍ତ ଆର୍ଦ୍ରାନକ୍ଷତ୍ରରେ ରହିଥିବେ ସେହି ସକଳଦିବସମଧ୍ୟରୁଁ ଯେକୌଣସିଦିନରେ ନବୋଦକ ନିମିତ୍ତ ଶ୍ରାଦ୍ଧ-କରିବ ।

ମାଘଫାଲ୍ଗୁନ ବୈଶାଖେଷ୍ୱପି ନବାନ୍ନ ଶ୍ରାଦ୍ଧଂ କାର୍ଯ୍ୟଂ ।
ସ୍ମାର୍ତ୍ତଃ ।

ମାଘ, ଫାଲ୍ଗୁନ ଓ ବୈଶାଖମାସରେ ନବାନ୍ନର ବିହିତକାଳ, ହରିଶୟନରେ କରିବନାହିଁ ।

ନବାନ୍ନଂ ନୈବନନ୍ଦାୟାଂ ନଚସୁପ୍ତେ ଜନାର୍ଦ୍ଦନେ ।
ନକୃଷ୍ଣପକ୍ଷେଧନୁଷି ତୁଲାୟାଂ ନୈବକାରୟେତ୍ ।
ଇତି ଜ୍ୟୋତିଷେ ।

ନନ୍ଦା, ହରିଶୟନ, ଓ କୃଷ୍ଣପକ୍ଷରେ ଏବଂ ଧନୁ ଓ ତୁଲାଗତ୍ତିରେ ନବାନ୍ନ କରିବନାହିଁ କିନ୍ତୁ ହରିଶୟନ ମଧ୍ୟରେ ଅଶ୍ୱିନ ମାସରେ ବିଧିଅଛି ପ୍ରମାଣଂ ଯଥା; —

ଅଶ୍ୱିନ ମଧିକୃତ୍ୟ ।

ଶୁକ୍ଳପକ୍ଷେ ନବଂଧାନ୍ୟଂ ପକ୍ୱଂଜ୍ଞାତ୍ୱା ସୁଶୋଭନଂ ।
ଗଚ୍ଛେତ୍ କ୍ଷେତ୍ରାଦିଧାନେନ ଗୀତବାଦ୍ୟପୁରଃସରଃ ॥
ତେନଦେବାନ୍ ପିତୃଂଶ୍ଚୈବ ତର୍ପୟେଦର୍ଚ୍ଚୟେତ୍ତଥା ।
ବ୍ରହ୍ମପୁରାଣଂ ।

ଅଶ୍ୱିନମାସରେ ଧାନ୍ୟପକ୍ୱଜାଣି କ୍ଷେତ୍ରୀଗୀତବାଦ୍ୟାଦି କରିତଃ କ୍ଷେତ୍ରକୁଗମନକରିବ, ଏବଂ ଧାନ୍ୟଚ୍ଛେଦନକରି ଆଣିବ, ଓ ସେହିଧାନ୍ୟରେ ପିତୃ ଓ ଦେବଗଣଙ୍କ ଅର୍ଚ୍ଚନାକରିବ ଆଉଗୌଣ

କାଲମଧ୍ୟରେ ଅଗ୍ରହାୟଣମାସରେ ପ୍ରଶସ୍ତ । ପ୍ରମାଣଂଯଥା, —

ବୃଶ୍ଚିକେଶୁକ୍ଲପକ୍ଷେତୁ ନବାନ୍ନଂଶସ୍ୟତେବୁଧୈଃ ।

ଅଗ୍ରହାୟଣମାସର ଶୁକ୍ଲପକ୍ଷରେ ନବାନ୍ନ କରିବ, କିନ୍ତୁ ଇହାର ପ୍ରଥମଦିନପ୍ରଦିନ ୨ଂଶଦଣ୍ଡ ଓ ଶେଷରେ ଛ ଦିନ ଦ ୪୦ ଣ୍ଡ ତ୍ୟାଗ-କରି ଶ୍ରାଦ୍ଧକରିବ । ପ୍ରମାଣଂଯଥା; —

ସୂର୍ଯ୍ୟେତୈବ ବ୍ଶାଖଗେସ୍ଥିରତଯୌ ପାପେ ବିଜନ୍ମାନ୍ତିକେ ।
ନନ୍ଦାମନ୍ନମହୀଜ କାବ୍ୟଦିବସେ ପୌଷେମଯୌ କାର୍ତ୍ତିକେ ॥
ଭେଷୂଗ୍ରାହ୍ୟଶିବେଷୁ ବସ୍ତୁଶଯ୍ୟେନେ କୁମ୍ଭେଶଶିନ୍ୟସ୍ତମେ ।
ଶ୍ରାଦ୍ଧଂଭୋଜନକଂ ନବାନ୍ନବସ୍ତ୍ରଂ ପୁତ୍ରାର୍ଥିନାଶ ପ୍ରଦଂ ॥
ଜ୍ୟେଷ୍ଠାଶେଷାର୍ଦ୍ଧଗେସୂର୍ଯ୍ୟେ ମୃଗନେତ୍ରାନ୍ତଶାମ୍ବିକେ ॥
ନବାନ୍ନେ ଭୋଜନଂ ଶ୍ରାଦ୍ଧଂ ଜନ୍ମଚନ୍ଦ୍ରେତଯୌନଚ ।
ଇତ ଜ୍ୟୋତିଷେ ॥

ମାର୍ଗଶୀର୍ଷ ପ୍ରଥମଦିନରଦିନ ୨୦ ଦଣ୍ଡ ଓ ଶେଷ ଛ ଦିନ ୪୦ ଦଣ୍ଡ ବ୍ୟତୀତ ସମସ୍ତ ମାସରେ ନବାନ୍ନନିମିତ୍ତ ଶ୍ରାଦ୍ଧକରିପାରିବ । ଆଉ ତ୍ରୟୋଦଶୀ ପଞ୍ଚମ ତାଗ୍ * ଏବଂ ରିକ୍ତା ଓ ନନ୍ଦାତିଥି ଶନି ମଙ୍ଗଲ ଓ ଶୁକ୍ରବାର ପୂର୍ବଭାଦ୍ରପଦ, ପୂର୍ବାଷାଢ଼ା, ପୂର୍ବାଫାଲ୍ଗୁନୀ, ମଘା ଭରଣୀ ଅଶ୍ଳେଷା ଓ ଆର୍ଦ୍ରାନକ୍ଷତ୍ର ପୌଷ ଚୈତ୍ର କାର୍ତ୍ତିକ ମାସ ଆଉ ଅଷ୍ଟମଚନ୍ଦ୍ର ※ ଆଉ ବସ୍ତୁଶଯ୍ୟନ ଏଥିରେ ନବାନ୍ନ ଓ ନବାନ୍ନଦ୍ରବ୍ୟରୁ ଶ୍ରାଦ୍ଧକଲେ ପୁତ୍ର ଏବଂ ଅର୍ଥନାଶହୁଏ ।

ବ୍ରହ୍ମା ବସ୍ତୁ ବୃହସ୍ପତି ଶଶଧରେ ମାର୍ତ୍ତଣ୍ଡପୌଷ୍ଣାଦିତୌ ।
ମୈତ୍ରେତଧିଷ୍ଣ୍ୟଶାଖବାୟୁଯନରେ ମୂଲାଶ୍ୱିବହ୍ନୌତଥା ॥

---

* ତାଗ୍ଶୁଦ୍ଧି ପ୍ରକରଣଦେଖ !

※ ଚନ୍ଦ୍ର ଶୁଦ୍ଧି ପ୍ରକରଣଦେଖ !

ଶନୈ ବାରୁଣରୁକ୍ଷକେ ଶୁଭଦିନେ ଶ୍ରାଦ୍ଧଂ ନବଂ ଶସ୍ୟତେ ।
ନନ୍ଦାଭଗିବଭୂମିକେଷୁ ନଭବେଜ୍ଜ୍ରାଦ୍ଧଂ ନବାନ୍ନୋଭବଂ ॥
ଇତି ଖେଳଗୁଳଃ ।

ରୋହିଣି, ଶ୍ରବଣା, ପୁଷ୍ୟା, ମୃଗଶିର୍, ହସ୍ତା, ରେବତୀ, ପୁନର୍ବସୁ, ଅନୁରାଧା, ଚିତ୍ରା, ବିଶାଖା, ସ୍ୱାତୀ, ଧନିଷ୍ଠା, ମୂଳା, ଅଶ୍ୱିନୀ, କୃତ୍ତିକା, ଜ୍ୟେଷ୍ଠା ଓ ଶତଭିଷା ଏହିସକଳ ନକ୍ଷତ୍ରରେ ଏବଂ ରବି ସୋମ ବୁଧ ବୃହସ୍ପତି ବାରରେ ଓ ଚନ୍ଦ୍ର ତାର୍ ଶୁଦ୍ଧିଯୁକ୍ତ ଶୁଭ ଦିନରେ ନବାନ୍ନ ଓ ନବାନ୍ନ ହେତୁରୁ ଶ୍ରାଦ୍ଧକରିବ । ※ । ନନ୍ଦାତିଥିରେ ଓ ଶୁକ୍ର, ମଙ୍ଗଳ, ଶନିବାରରେ ନବାନ୍ନ ଶ୍ରାଦ୍ଧ କରିବନାହିଁ ।

ବୈଶାଖ ମାସରେ ଯବଶ୍ରାଦ୍ଧ କରିବ ।

ପିତରି ଜୀବତି ଯଃ ଶ୍ରାଦ୍ଧଂ କୁର୍ଯ୍ୟାତ୍ ପିତା ଯେଷାଂ
କୁର୍ଯ୍ୟାତ୍ ତେଷାଂ କୁର୍ଯ୍ୟାତ୍, ପିତରି ପିତା ମହେତ
ଜୀବତିପିତାମହୋ ଯେଷାଂ କୁର୍ଯ୍ୟାତ୍ ତେଷାଂ
କୁର୍ଯ୍ୟାତ୍ । ପିତରି ପିତାମହେ ପ୍ରପିତାମହେତ
ଜୀବତି ନୈବ କୁର୍ଯ୍ୟାତ୍ । ମାତାମହାଦିଷ୍ୱେଷ
ଜୀବସୁ ପିତ୍ରାଦି ତ୍ରୟ ମାତ୍ର ଶ୍ରାଦ୍ଧଂ କର୍ତ୍ତବ୍ୟଂ
ଇତି ବିଷ୍ଣୁ ସୂତ୍ରଂ ।

ଯଦିକାହାର ପିତାଜୀବତଥାଏ ତେବେସେବ୍ୟକ୍ତି ପିତାଯେଉଁପ ଶ୍ରାଦ୍ଧାଦି କରିବତାହିକରିବ ଅର୍ଥାତ୍ ପିତାମହାଦିଙ୍କୁ ପିଣ୍ଡଦାନକରିବ ଏରୂପ ପିତା ଓ ପିତାମହ ଜୀବତଥିଲେ ପିତାମହ ଯେଉଁପକରିବେ

---

※ ଯଦି ଏପରି ଦିନସ୍ଥିରହେଲେ କାହାରଚନ୍ଦ୍ର ତାର୍ଶୁଦ୍ଧ ନହୁଏ ତାହାରପକ୍ଷେ ନବାନ୍ନ କର୍ତ୍ତବ୍ୟ, ଚନ୍ଦ୍ର ତାର୍ ଶୁଦ୍ଧନହେଲେ ତାହାର ପ୍ରତିକାର୍ଥେ ଯେଉଁଦାନ ନିର୍ଦ୍ଦିଷ୍ଟ ଅଛି ତାହା କରିବ, ତହିଁରେ ସକଳ ଦୋଷଖଣ୍ଡନ ହେବ ।

ସେଖୁଦ୍ଧା ତାହାର କରବେ କନ୍ତୁ ପ୍ରପିତାମହ ଜୀବିତଥିଲେ ଶ୍ରାଦ୍ଧ କରିବନାହିଁ । ଯଦି ମାତାମହାଦି ତିନପୁରୁଷ ଜୀବିତ ଥାନ୍ତି ପିତା ପିତାମହ ପ୍ରପିତାମହ ତିନ ପୁରୁଷର ଶ୍ରାଦ୍ଧକରବେ ମାତାମହାଦିର କରବେ ନାହିଁ ।



ଅଥ ଶ୍ରାଦ୍ଧକାଳ ନିରୂପଣଂ

ପୂର୍ବାହ୍ନେ ମାତୃକଂ ଶ୍ରାଦ୍ଧମପରାହ୍ନେ ତୁ ପୈତୃକଂ ।
ଏକୋଦ୍ଦିଷ୍ଟନ୍ତୁ ମଧ୍ୟାହ୍ନେ ପ୍ରାତର୍ବୃଦ୍ଧିନିମିତ୍ତକଂ ॥
ବ୍ରହ୍ମ ପୁରାଣଂ ।

ସାଗ୍ନିକ କର୍ତ୍ତବ୍ୟ ଅନ୍ୱଷ୍ଟକା ଶ୍ରାଦ୍ଧାଦି ପୂର୍ବାହ୍ନରେ କରିବ, ଏବଂ ପୈତୃକଶ୍ରାଦ୍ଧାଦି ଅର୍ଥାତ୍ ପାର୍ବଣଶ୍ରାଦ୍ଧ ଅପରାହ୍ନରେ କରିବ । ମଧ୍ୟାହ୍ନକାଳରେ ଏକୋଦ୍ଦିଷ୍ଟ ଶ୍ରାଦ୍ଧକରିବ । ପରନ୍ତୁ ଏହିଶ୍ରାଦ୍ଧ ଶୁକ୍ଳ-ପକ୍ଷ ଓ କୃଷ୍ଣପକ୍ଷରେ ହିହତ ପାର୍ବଣ ଅଷ୍ଟକା ଓ ସପିଣ୍ଡୀକରଣରେ ପ୍ରଭେଦ ଅଛି । ପ୍ରମାଣଂ ଯଥା;—

ଶୁକ୍ଳପକ୍ଷସ୍ୟ ପୂର୍ବାହ୍ନେ ଶ୍ରାଦ୍ଧଂ କୁର୍ଯ୍ୟାଦ୍ବିଚକ୍ଷଣଃ ।
କୃଷ୍ଣପକ୍ଷାପରାହ୍ନେତୁ ରୌହିଣନ୍ତୁ ନଲଙ୍ଘୟେତ୍ ॥
ଇତି ବାୟୁପୁରାଣଂ ।

ଏହି ସ୍ଥଳରେ ଯୁଗାଦ୍ୟା, ମାଘୀ ପୌର୍ଣ୍ଣମାସୀ ନିମିତ୍ତ ପାର୍ବଣ ଶ୍ରାଦ୍ଧ ପୂର୍ବାହ୍ନରେ କରିବ । ଆଉ କୃଷ୍ଣପକ୍ଷରେ ହିହତ ପାର୍ବଣ ଶ୍ରାଦ୍ଧ ଅପରାହ୍ନରେ କର୍ତ୍ତବ୍ୟ ।

ପ୍ରାତଃକାଲୋ ମୁହୂର୍ତ୍ତାଂସ୍ତ୍ରୀନ୍ ସଙ୍ଗବସ୍ତାବଦେବତୁ ।
ମଧ୍ୟାହ୍ନସ୍ତ୍ରୀ ମୁହୂର୍ତ୍ତଃସ୍ୟାଦପରାହ୍ନ ସ୍ତତଃପରଂ ।
ସାୟାହ୍ନସ୍ତ୍ରି ମୁହୂର୍ତ୍ତଃସ୍ୟା ଚ୍ଛ୍ରାଦ୍ଧଂ ତତ୍ର ନକାରୟେତ୍ ।
ରାକ୍ଷସୀ ନାମ ସାବେଲା ଗର୍ହିତା ସର୍ବକର୍ମସୁ ॥
ଇତି ମତ୍ସ୍ୟପୁରାଣଂ ।

ପ୍ରାତଃକାଳର ତିନିମୁହୂର୍ତ୍ତିକୁ * ପ୍ରାତଃକାଳ କହି । ତପୂର ତିନିମୁହୂର୍ତ୍ତିକୁ ସଙ୍ଗବ କହି ତାହାର ପର ତିନିମୁହୂର୍ତ୍ତିକୁ ମଧ୍ୟାହ୍ନ, ଓ ପର ତିନିମୁହୂର୍ତ୍ତିକୁ ଅପରାହ୍ନ କହି । ତାହାରପରେ ତିନି ମୁହୂର୍ତ୍ତିକୁ ସାୟାହ୍ନ କହି ଏହି ସମୟରେ ଶ୍ରାଦ୍ଧ କରିବନାହିଁ । ଏହି ତିନିମୁହୂର୍ତ୍ତି ରାକ୍ଷସୀ କାଳ ; ତହିଁରେ କୌଣସି କର୍ମ କରିବନାହିଁ । ପୂର୍ବ ବଚନରେ ରୌହିଣନ୍ତୁ ଇତ୍ୟାଦି ଯାହା ଲିଖିତ ହୋଇଅଛି , ତହିଁରେ ଗୌଣକାଳରେ ସୁଦ୍ଧା କରିପାରିବ ତଥାପି ରାକ୍ଷସୀ ବେଳାରେ କୌଣସି କର୍ମ କରି ପାରିବ ନାହିଁ ଏହିହେତୁରୁ ବୋଲାଯାଇଅଛିଯେ ( ରୌହିଣନ୍ତୁ ନଲଙ୍ଘୟେତ୍ )

କୃଷ୍ଣପକ୍ଷ ବିହିତ ପାର୍ବଣ ଶ୍ରାଦ୍ଧ , କି ସପିଣ୍ଡୀ କରଣ , କି ମୃତାହାଦିଜନ୍ୟ ପାର୍ବଣ ଶ୍ରାଦ୍ଧ , ବା ଏକୋଦ୍ଦିଷ୍ଟ ଶ୍ରାଦ୍ଧକାଳ ବ୍ୟବସ୍ଥାଏହି ।

ଊର୍ଦ୍ଧ୍ୱଂ ମୁହୂର୍ତ୍ତାତ୍ କୁତପାତ୍ ଯନ୍ମୁହୂର୍ତ୍ତଚତୁଷ୍ଟୟଂ ।
ମୁହୂର୍ତ୍ତ ପଞ୍ଚକମ୍ୟାପି ସ୍ୱଧାଭବନମିଷ୍ୟତେ ॥
ଇତି ମତ୍ସ୍ୟପୁରାଣଂ ॥

କୁତପମୁହୂର୍ତ୍ତରପର ଚାରିମୁହୂର୍ତ୍ତ କାଳମଧ୍ୟରେ ବା କୁତପସହିତ ପାଞ୍ଚମୁହୂର୍ତ୍ତ କାଳ ପୂର୍ବୋକ୍ତ ଶ୍ରାଦ୍ଧସକଳକରିବ । ତପୂରେ ରାକ୍ଷସୀ ବେଳାଆଗତାହେଲେ ଆଉ କୌଣସି କର୍ମକରିବନାହିଁ ।

କୁତପକାଳ ମାହି ।

ଅହ୍ନୋମୁହୂର୍ତ୍ତା ବିଖ୍ୟାତା ଦଶପଞ୍ଚ ଚ ସର୍ବଦା ।
ତତ୍ରାଷ୍ଟମୋ ମୁହୂର୍ତ୍ତୋ ଯଃ ସକାଳ କୁତପଃ ସ୍ମୃତଃ ॥

ଦିବସକୁପଞ୍ଚଦଶଭାଗକଲେ ଦୁଇଦଣ୍ଡକରି ଏକ ୨ ମୁହୂର୍ତ୍ତ ହୁଏ ତାହାର

---

* ଦିବସକୁ ପଞ୍ଚଦଶ ଭାଗରେ ବିଭକ୍ତ କଲେ ଏକଭାଗ କୁ ମୁହୂର୍ତ୍ତି କହି ସେହିପରି ତିନିମୁହୂର୍ତ୍ତି ।

ଅଷ୍ଟମ ମୂହୂର୍ତ୍ତକୁ କୁତପକହନ୍ତି ।

ଗ୍ରହଣେ ଶ୍ରାଦ୍ଧଂ ନକୁର୍ବୀତ ରାକ୍ଷସୀ କୀର୍ତ୍ତିତାହିସା ।
ସନ୍ଧ୍ୟୟୋରୁଭୟୋଶ୍ଚୈବ ସୂର୍ଯ୍ୟେଚୈବାଚିରୋଦିତେ ।
ଇତି ମନୁଃ ।

ରାତ୍ରି କାଳକୁ ରାକ୍ଷସୀକାଳକହନ୍ତି ଏତନ୍ନିମିତ୍ତ ରାତ୍ରିରେ ଶ୍ରାଦ୍ଧକରିବ ନାହିଁ କଲେ ଶ୍ରାଦ୍ଧର ଫଳନଷ୍ଟହୁଏ ଆଉ ଉଭୟସନ୍ଧ୍ୟାରେ ଅର୍ଥାତ୍ ସାୟଂସନ୍ଧ୍ୟା ସମୟରେ ଓ ପ୍ରାତଃ ସନ୍ଧ୍ୟାସମୟରେ ଏବଂ ଦିବାର ପ୍ରଥମତିନିଦଣ୍ଡ ପର୍ଯ୍ୟନ୍ତ ଶ୍ରାଦ୍ଧକରିବ ।

ଯଦିଉଭୟଦିନରେ ଶ୍ରାଦ୍ଧକରଣ ଯୋଗ୍ୟକାଳଲାଭହୁଏ ତେବେ ଅପରାହ୍ନିକଶ୍ରାଦ୍ଧ ପୂର୍ବତିଥିରେ କର୍ତ୍ତବ୍ୟ ( ଯସ୍ୟାସ୍ତଂ ସବିତାଯାତି ପିତରସ୍ତା ମୁପାସତେ । ତିଥିନ୍ତେଭ୍ୟୋ ହି ପରାହ୍ନୋପି ସ୍ୱୟଂ ଦତ୍ତଃସ୍ୱୟମ୍ଭୁବା । ) ଆଉ ଯଦି ଉଭୟଦିନରେ ଏକୋଦ୍ଦିଷ୍ଟର ସମାନକାଳ ଲାଭହୁଏ କି ନହୁଏ ତେବେ ଏକୋଦ୍ଦିଷ୍ଟଶ୍ରାଦ୍ଧ ଶୁକ୍ଳକୃଷ୍ଣପକ୍ଷଭେଦରେ ବ୍ୟବସ୍ଥାହେବ । ପ୍ରମାଣଂଯଥା,—

ଶୁକ୍ଳପକ୍ଷେତିଥିର୍ଗ୍ରାହ୍ୟା ଯସ୍ୟାମଭ୍ୟୁଦିତୋ ରବିଃ ।
କୃଷ୍ଣପକ୍ଷେତିଥିର୍ଗ୍ରାହ୍ୟା ଯସ୍ୟାମସ୍ତମିତୋରବିଃ ॥
ଇତି ବୃଷ୍ଟଧର୍ମୋତ୍ତରେ ।

ଯେଉଁ ସକଳ ଶ୍ରାଦ୍ଧକାଳର ବ୍ୟବସ୍ଥା ଲିଖିତହେଲା ଅମାବସ୍ୟାରେ ଏହି ସକଳନିୟମ ନାହିଁ ତହିଁରେ କ୍ଷୀଣା, ସ୍ତମ୍ଭିତା, ଓ ବର୍ଦ୍ଧିମାନା ଭେଦରେ ତିନିପ୍ରକାର ବ୍ୟବସ୍ଥା ଅଛି ।

ଯଦା ଚତୁର୍ଦ୍ଦଶୀ ଯାମଂ ତୁରୀୟଂ ମନୁପୂରୟେତ୍ ।
ଅମାବସ୍ୟା କ୍ଷୀୟମାଣା ତଦୈବ ଶ୍ରାଦ୍ଧମିଷ୍ୟତେ ॥
ଛନ୍ଦୋଗପରିଶିଷ୍ଟେ କାତ୍ୟାୟନଃ ।

ଯଦି ପୂର୍ବଦିନରେ ତୃତୀୟ ପ୍ରହରର ପର ବା ତୃତୀୟ ପ୍ରହର

ଦବାର ସମସ୍ତ ପର୍ଯ୍ୟନ୍ତ ଚତୁର୍ଦ୍ଦଶୀ ଥାଏ, ଏବଂ ପରଦିନରେ ଏହି ସମସ୍ତ ପର୍ଯ୍ୟନ୍ତ ବା କିଛି କାଳ ନ୍ୟୂନରେ ଅମାବସ୍ୟା ଥାଏ, ତେବେ ସାଗ୍ନିକ ଓ ନିରଗ୍ନିକ ପ୍ରଭୃତିମାନେ ପୂର୍ବଦିନରେ ଶ୍ରାଦ୍ଧ କରିବେ କାରଣ ତହିଁରେ ଅମାବସ୍ୟା କ୍ଷୀଣାନ୍ତ ହୁଏ । ପରନ୍ତୁ ସମସ୍ତଙ୍କର ପକ୍ଷରେ ଅମାବସ୍ୟା ଶ୍ରାଦ୍ଧଦିନର ଦ୍ୱିର୍ଭାଗକରି ତାର ତୃତୀୟଭାଗରେ ଶ୍ରାଦ୍ଧ କରିବାଧେୟ ପ୍ରମାଣଂ ( ବାସରସ୍ୟ ତୃତୀୟାଂଶେନାତ ସନ୍ଧ୍ୟା-ସମୀପତଃ ) ତାହାରପରେ ରକ୍ଷସୀବେଳା; ଏହି ହେତୁରୁ ସେହିକାଳ ବର୍ଜ୍ଜନୀୟ । ଜ୍ୟେଷ୍ଠ କି ଅଗ୍ରହାୟଣ ମାସରେ ଯଦି ଏହିପରି ହୁଏ ତେବେ ପରଦିନରେ ଶ୍ରାଦ୍ଧକରିବ, ପ୍ରମାଣଂ-

ଅର୍ଦ୍ଧେନ୍ଦୁର୍ଦ୍ଦ୍ୟପ୍ରହରେ ଦ୍ୱିବଶିଷ୍ଟତେ ଚତୁର୍ଥୀଭାଗୋନକଳାବଶିଷ୍ଟଃ ।
ତଦନ୍ତ ଏବ କ୍ଷୟମେତ କୃଷ୍ଣମେବ ଜ୍ୟୋତିଷ୍ଠ ନିବଦୋ ବଦନ୍ତି ॥
ଇତି ଜ୍ୟୋତିଷଃ

ଯଦି ଅମାବସ୍ୟା ଅପରାହ୍ଣ ଦ୍ୱୟକୁ ବ୍ୟାପିଥାଏ ଅର୍ଥାତ୍ ପୂର୍ବଦିନରେ ତିନି ଦଣ୍ଡ ବେଳା ଥାଉଁ ଅମାବସ୍ୟାହୋଇ ପରଦିନରେ ୬୦ ଦଣ୍ଡ ପର୍ଯ୍ୟନ୍ତଥାଏ ତେବେସାଗ୍ନିକମାନେ ପୂର୍ବଦିନରେ ଓ ନିରଗ୍ନିକମାନେ ପରଦିନରେ ଶ୍ରାଦ୍ଧ କରିବେ । ଆଉ ଯଦି ପୂର୍ବଦିନ ( ୨୨ ) ଦଣ୍ଡ ପରେ ଅମାବସ୍ୟା ପାତହୋଇ ପରଦିନ ( ୨୨ ) ଦଣ୍ଡ ପର୍ଯ୍ୟନ୍ତ ଥାଏ ତେବେ ଋଗ୍ବେଦୀୟମାନେ ପୂର୍ବଦିନରେ ଓ ଯଜୁର୍ବେଦୀୟମାନେ ପରଦିନରେ ଶ୍ରାଦ୍ଧକରିବେ । ସାମବେଦୀ ମାନଙ୍କର ନିୟମନାହିଁ ସେମାନେ ଯେଉଁ ଦିନରେ ଇଚ୍ଛା ସେହିଦିନରେ କରିପାରିବେ

ନିମୁହୂର୍ତ୍ତିପି କର୍ତ୍ତବ୍ୟା ପୂର୍ବଦର୍ଶୀତ ବହ୍ବୃଚୈଃ ।
କୁହୁ ରଧ୍ୱର୍ଯୁଭିଃ କାର୍ଯ୍ୟା ଯଥେଷ୍ଟଂ ସାମଗୀତଭିଃ ।
ଇତି ଲଘୁହାରୀତଃ ॥

ଯଦିପୂର୍ବଦିନରେ ( ୨୪ ) ଦଣ୍ଡପରେ ଅମାବସ୍ୟା ପତତହୋଇ

ପରଦିବସର ୨୪ ଦଣ୍ଡ ପର୍ଯ୍ୟନ୍ତ ଥାଏ ତେବେ ସମସ୍ତଙ୍କର ପକ୍ଷରେ ପରଦିନରେ ଶ୍ରାଦ୍ଧକର୍ତ୍ତବ୍ୟ, ପ୍ରମାଣଂ;

ବର୍ଦ୍ଧିମାନା ମମାବସ୍ୟାଂ ଲକ୍ଷୟେଦପରେ ହି ଦିନ ।
ସମାଂ ସ୍ତ୍ରୀ ନଧିକାନ୍ ବାପି ପିତୃଯଜ୍ଞସ୍ତତୋ ଭବେତ୍ ॥

ଅମାବସ୍ୟାରେ ମୃତବ୍ୟକ୍ତି ପକ୍ଷରେ ଏପର ବ୍ୟବସ୍ଥା ନୁହେ ତାହାର ପାର୍ବଣ ଶ୍ରାଦ୍ଧଗୁଡ଼ିକ ଅନୁଷ୍ଠାନ କର ସପିଣ୍ଡୀ କରଣ ଶ୍ରାଦ୍ଧ କରିବାଗୁଡ଼ିକ ଦଶମ ଏକାଦଶ ଓ ଦ୍ୱାଦଶମୁହୂର୍ତ୍ତରେ ଶ୍ରାଦ୍ଧକରିବ ସ୍ମାର୍ତ୍ତଭଟ୍ଟାଚାର୍ଯ୍ୟ ମହାଶୟ ପ୍ରଶସ୍ତ, ପ୍ରଶସ୍ତତର, ଓ ପ୍ରଶସ୍ତତମକାଳ ଏହିତ୍ରୟକଳ୍ପଅଛନ୍ତି, ଯଥା;-

ସାୟାହ୍ନ ମୁହୂର୍ତ୍ତ ଦ୍ୱୟ ପର୍ଯ୍ୟଦସ୍ତେ ତରକାଳ କୁତପାଦ ମୁହୂର୍ତ୍ତ-
ପଞ୍ଚକ ରୌହିଣ୍ୟାଦ ମୁହୂର୍ତ୍ତ ଚତୁଷ୍ଟୟ ବାସର ତୃତୀୟାଂ ଶୀୟା
ପରାହ୍ନ ମୁହୂର୍ତ୍ତ ଦ୍ୱୟକାଳ ପଞ୍ଚକୋ ଯଥାକ୍ରମ ମାପତ
ସାମାନ୍ୟ ପ୍ରଶସ୍ତ ପ୍ରଶସ୍ତତର ପ୍ରଶସ୍ତତମତ୍ୱେନ ଜ୍ଞେୟଃ ।

ସାୟାହ୍ନ ମୁହୂର୍ତ୍ତଦ୍ୱୟ, ପର୍ଯ୍ୟଦସ୍ତେ ତରକାଳ, କୁତପାଦ ମୁହୂର୍ତ୍ତ ପଞ୍ଚକ, ରୌହିଣ୍ୟାଦ ମୁହୂର୍ତ୍ତ ଚତୁଷ୍ଟୟ, ଦିନର ତୃତୀୟାଂଶୀୟ ଅପରାହ୍ନ ମୁହୂର୍ତ୍ତ ଦ୍ୱୟ କାଳପଞ୍ଚକ ଅପତ ସାମାନ୍ୟ ପ୍ରଶସ୍ତ, ପ୍ରଶସ୍ତତର ଓ ପ୍ରଶସ୍ତ ତମକାଳ ।

——୦§()§୦——

ଅଥ ଏକୋଦ୍ଦିଷ୍ଟ ଶ୍ରାଦ୍ଧକାଳ ବ୍ୟବସ୍ଥା ।

ଏକୋଦ୍ଦିଷ୍ଟ ଶ୍ରାଦ୍ଧଅଷ୍ଟମ ମୁହୂର୍ତ୍ତରେ ଆରମ୍ଭକର ନବମ ମୁହୂର୍ତ୍ତରେ ସମାପନ କରିବ । ଯଦି ଦୁଇଦିନରେ ଅଷ୍ଟମ ଓ ନବମ ମୁହୂର୍ତ୍ତ ପାଏ ତେବେ କୃଷ୍ଣପକ୍ଷରେ ପୂର୍ବଦିନରେ ଏବଂ ଶୁକ୍ଳପକ୍ଷରେ ପରଦିନରେ ଶ୍ରାଦ୍ଧକରିବ । ଯଦି ଉଭୟ ଦିନରେ ଯଥା କାଳ ନ ମିଳେ କିନ୍ତୁ ପରଦିନ ସପ୍ତମ ମୁହୂର୍ତ୍ତ ପାଇଅଛି ଏପରସ୍ଥଳରେ ପରଦିନରେ ଶ୍ରାଦ୍ଧହେବ । ଆଉ ଯଦି ପୂର୍ବଦିନରେ ନବମ ମୁହୂର୍ତ୍ତ କାଳରେ

ତଥିପାଇ ପରଦିନ **ଅଷ୍ଟମ** ମୁହୂର୍ତ୍ତି ପର୍ଯ୍ୟନ୍ତ ଥାଏ, ତେବେ କୃଷ୍ଣପକ୍ଷ-ହେଲେ ସୁଦ୍ଧା ପରଦିନରେ ଶ୍ରାଦ୍ଧକରିବ । ପ୍ରମାଣଂ— ( ଆରଭ୍ୟ କୁତପେ ଶ୍ରାଦ୍ଧ ନିସ୍ଯାଦ ) ଯଦି ଦୁଇଦିନରେ ଅଷ୍ଟମ ମୁହୂର୍ତ୍ତି କାଳନମିଳେ ପୂର୍ବଦିନ ନବମ ମୁହୂର୍ତ୍ତି ପାଇଅଛି ତେବେ ଶୁକ୍ଳ ପକ୍ଷହେଲେ ସୁଦ୍ଧା ସମାପ୍ତି କାଳର ଅନୁରୋଧରେ ପୂର୍ବଦିନରେ ଶ୍ରାଦ୍ଧକରିବ । ଯଦି ପୂର୍ବଦିନରେ ନବମ ମୁହୂର୍ତ୍ତି ନମିଳେ ଓ ପରଦି-ନରେ ସପ୍ତମ ମୁହୂର୍ତ୍ତି କାଳମିଳେ ତେବେ କୃଷ୍ଣପକ୍ଷହେଲେସୁଦ୍ଧା ପରଦିନରେ ଶ୍ରାଦ୍ଧ କରିବ । କାରଣ ଏକୋଦ୍ଦିଷ୍ଟ ଶ୍ରାଦ୍ଧ ମଧ୍ୟାହ୍ନ-ରେ କରିବ । ଆଉଯଦି ପୂର୍ବଦିନ ନବମ ମୁହୂର୍ତ୍ତି ପରଦିନ ସପ୍ତମ ମୁହୂର୍ତ୍ତି ନମିଳେ ତେବେ କୃଷ୍ଣପକ୍ଷରେ ପୂର୍ବ ଦିନରେ ଶୁକ୍ଳ ପକ୍ଷରେ ପରଦିନରେ ଶ୍ରାଦ୍ଧହେବ ।

ଯଦି ଏକୋଦ୍ଦିଷ୍ଟ ଶ୍ରାଦ୍ଧଦିନରେ ଅଶୌଚ ପାତଜନ୍ୟ ଶ୍ରାଦ୍ଧ କରି ନହୁଏ ତେବେ **ଅଶୌଚା**ନ୍ତ ଦିନରେ କରିବ ।

ଦେଯେ ପିତୃଣାଂ ଶ୍ରାଦ୍ଧେତୁ ଅଶୌଚଂ ଜାୟତେ ଯଦି ।
ତଦଶୌଚବ୍ୟତୀତେତୁ ତେଷାଂ ଶ୍ରାଦ୍ଧଂ ବିଧୀୟତେ ॥

—※✕※—

ଅଥ ପ୍ରେତଶ୍ରାଦ୍ଧ ବ୍ୟବସ୍ଥା ।

ଏକୋଦିଷ୍ଟେତୁ ସମ୍ପ୍ରାପ୍ତେ ଯଦିବିଘ୍ନଂ ପ୍ରଜାୟତେ ।
ମାସେ ଽନ୍ୟସ୍ମିଂସ୍ତିଥୌ ତସ୍ମିଂସ୍ତଦା ଦଦ୍ୟା ପ୍ରଯତ୍ନତଃ ॥
ଇତି ଦେବଲଃ ॥

ଯଦି ଏକୋଦିଷ୍ଟ ଶ୍ରାଦ୍ଧଦିନ କୌଣସି ବିଘ୍ନ ହେତୁରୁ ଶ୍ରାଦ୍ଧକରି ନହୁଏ ତେବେ ଅନ୍ୟ ମାସର ସେହି ତଥିରେ ଅଥାତ୍ ଯେଉଁ ତଥିରେ ଏକୋଦିଷ୍ଟ ଶ୍ରାଦ୍ଧ ହୋଇଥାଏ ସେହି ତଥିରେ ଶ୍ରାଦ୍ଧ କରିବ । ଏହା ବିଦିତ ପକ୍ଷେ ; ଅବିଦିତ ପକ୍ଷେ ଏହି ।

ଶ୍ରାଦ୍ଧ ବିଘ୍ନେ ସମୁତ୍ପନ୍ନେ ମୃତାହା ବିଦିତେ ତଥା ।
ଏକାଦଶ୍ୟାଂ ପ୍ରକୁର୍ବୀତ କୃଷ୍ଣପକ୍ଷେ ବିଶେଷତଃ ॥
ଇତି ଲଘୁହାରୀତଃ ।

ଯଦି ଏକୋଦ୍ଦିଷ୍ଟ ଶ୍ରାଦ୍ଧ ଦିନରେ କୌଣସି କାରଣ ବଶତଃ ଶ୍ରାଦ୍ଧକର୍ ନହୁଏ କିମ୍ବା ମୃତାହ ଅର୍ଥାତ୍ ମୃତତିଥି ଅବିଦିତ ଥାଏ ତାହାହେଲେ କୃଷ୍ଣପକ୍ଷର ଏକାଦଶୀରେ ଶ୍ରାଦ୍ଧ କରିବ ।

ନ ଜ୍ଞାୟତେ ମୃତାହଶ୍ଚେତ୍ ପ୍ରୋଷିତେ ସଂସ୍ଥିତେ ସତି ।
ମାସଶ୍ଚେତ୍ ପ୍ରତିବିଜ୍ଞାତସ୍ତଦ୍ଦର୍ଶେସ୍ଯା ନ୍ନୃ ତାହନ ॥
ବୃହସ୍ପତିଃ ।

କୌଣସିବ୍ୟକ୍ତି ବିଦେଶରେ ମୃତ୍ୟୁହୋଇଅଛି, ତାହାରଶ୍ରାଦ୍ଧାଧିକାରୀବ୍ୟକ୍ତି ମାସଜାଣେ, କିନ୍ତୁ କେଉଁ ତିଥିରେମୃତ୍ୟୁହୋଇଅଛି ତାହାଜାଣେନାହିଁ ଏପରିସ୍ଥଳରେ ଏହିବ୍ୟକ୍ତିରଶ୍ରାଦ୍ଧ ଏହିମାସର କୃଷ୍ଣା ଏକାଦଶୀ ବା ଅମାବସ୍ୟାରେ କରିବ ।

ଯଦିମାସୋ ନବିଜ୍ଞାତୋ ବିଜ୍ଞାତଂ ଦିନମେବହି ।
ତଦାମାର୍ଗଶିରେମାସି ମାଘେ ବା ତଦ୍ଦିନଂଭବେତ୍ ॥

ଯେ କୌଣସିବ୍ୟକ୍ତିର ବିଦେଶରେ ମୃତ୍ୟୁହୋଇଥିଲା ତାହାର ଶ୍ରାଦ୍ଧାଧିକାରୀ ଦିନଅର୍ଥାତ୍ ଯେଉଁ ତିଥିରେ ମୃତ୍ୟୁହୁଏ ତାହାଜାଣେ କିନ୍ତୁ କେଉଁମାସରେ ମୃତ୍ୟୁହୋଇଅଛି ତାହାଜାଣେନାହିଁ । ଏସ୍ଥଳରେ ଅଗ୍ରହାୟଣ କି ମାଘମାସର ସେହିତିଥିରେ ଶ୍ରାଦ୍ଧକରିବ * ।

ଅନ ବିଷଯ୍ୟେ ଭବିଷ୍ୟପୁରାଣଂ
ଦିନମେବତୁ ଜାନାତି ମାସଂନୈବ ତୁ ଯୋନରଃ ।

---

* କାଳାଦର୍ଶ ଓ କର୍ତ୍ତିଯ୍ୟା ମତରେ ମାର୍ଗଶିରସ୍ଥଳରେ ଆଷାଢ଼ରେ ଏହିପାଠ ବୋଲନ୍ତି ପରନ୍ତୁ ଆଷାଢ଼ମାସରେ ଶ୍ରାଦ୍ଧକଲେସୁଦ୍ଧା ହାନନାହିଁ ।

ମାର୍ଗଶୀର୍ଷେତଥାଭାଦ୍ରେ ମାଘେବା ତଦ୍ଦିନଂଭବେତ୍ ॥

ଦିନଜାଣେ, ମାସଜାଣେନାହିଁ ତାହାହେଲେ ଅଗ୍ରହାୟଣ, ଭାଦ୍ରବ ବା ମାଘମାସର ସେହି ତଥିରେ ଶ୍ରାଦ୍ଧକରିବ ।

ଦିନମାସୌ ନବିଜ୍ଞାତୌ ମରଣସ୍ୟ ଯଦାପୁନଃ ।
ପ୍ରସ୍ଥାନଦିନମାସୌତୁ ଗ୍ରାହ୍ୟୌ ପୂର୍ବୋକ୍ତୟା ଦିଶା ।
ବୃହସ୍ପତିଃ ॥

କୌଣସିବ୍ୟକ୍ତି ବିଦେଶଗମନକରିଥିଲା, ପରେବିଦେଶରେ ତାହାର ମୃତ୍ୟୁହୋଇଅଛି ଶ୍ରାଦ୍ଧାଧିକାରୀ; କେଉଁମାସ ବା କେଉଁ ତଥିରେ ମୃତ୍ୟୁହୋଇଅଛି କିଛିଜାଣେନାହିଁ । ଏସ୍ଥଳରେତାହାର ଶ୍ରାଦ୍ଧ ସେ ଯେଉଁ ମାସରେ ଯେଉଁ ଦିନରେ ବିଦେଶଗମନକରିଅଛି ସେହିଦିନରେହେବ । ଅତ୍ଏବ ସେବ୍ୟକ୍ତି ପ୍ରସ୍ଥାନମାସଜାଣେ, କିନ୍ତୁ ତଥିଜାଣେନାହିଁ, ଏପରିସ୍ଥଳେ ସେହିମାସର କୃଷ୍ଣାଏକାଦଶୀ ବା ଅମାବସ୍ୟାରେ ଶ୍ରାଦ୍ଧକରିବ । ଅତ୍ଏବ ପ୍ରସ୍ଥାନ ତଥିଜ୍ଞାତଅଛି କିନ୍ତୁ ମାସଜ୍ଞାତନାହିଁ ତେବେ ପୂର୍ବୋକ୍ତ ଯେଉଁ ୬ ମାସ ଉଲ୍ଲିଖିତଅଛି ସେହି ୬ ମାସର ସେହି ୬ ତଥିରେ ଶ୍ରାଦ୍ଧକରିବ । ଅତ୍ଏବ ସେ ବ୍ୟକ୍ତି ଶ୍ରାଦ୍ଧାଧିକାରୀ କାହାରିଠାରୁ ଶ୍ରବଣକରିଥାଏ ଯେ ଅମୁକମାସର ଅମୁକଦିନରେ ବିଦେଶଗମନକରିଥିଲା, କିନ୍ତୁମାସାଦିଜ୍ଞାତନୁହେ, ତେବେ ସେ ଯେଉଁ ମାସାଦି ଶ୍ରବଣକରିଅଛି ସେହିମାସରେ ଶ୍ରାଦ୍ଧାଦି କରିବ । ଯଦିକୌଣସିବ୍ୟକ୍ତି ଅନୁଦ୍ଦିଷ୍ଟହୋଇଅଛି ବାରବର୍ଷର ପର୍ଯ୍ୟନ୍ତ କୌଣସିସମ୍ବାଦ ନ ମିଳେ ତେବେ ତାହାରଶ୍ରାଦ୍ଧାଧିକାରୀ ମାନେ ତାକୁ ମୃତଜାଣିକୁଶପୁତ୍ତଳିକା ପର୍ଣ୍ଣନର ଦାହନକରି ତ୍ରିରାତ୍ରାଶୌଚାନ୍ତେ ଆଦ୍ୟଶ୍ରାଦ୍ଧାଦିକରିବେ ଏବଂ ଏହିଗୃହମଧ୍ୟରେ ପୂରକପିଣ୍ଡ ଦାନକରିବେ । ଅତ୍ଏବସେବ୍ୟକ୍ତି ଯେଉଁ ମାସର ଯେଉଁ ଦିନରେ ବିଦେଶଗମନକରିଥିଲା ସେହିମାସର ସେହିଦିନରେ ତାର ଏକୋଦ୍ଦିଷ୍ଟ ଶ୍ରାଦ୍ଧକରିବେ । ଯଦି ଦିନ ନ ଜାଣନ୍ତି ତେବେ ଅମାବସ୍ୟାରେ

୧

ଓ ମାସନ ଜାଣିଲେ ଆଷାଢ଼ମାସର ଅମାବସ୍ୟାରେ ଶ୍ରାଦ୍ଧକରିବେ
ପ୍ରମାଣଂ ଯଥା;—

ଗତସ୍ୟ ନଭବେତ୍ ବାର୍ତ୍ତାଯାବତ୍ ଦ୍ୱାଦଶ ବାର୍ଷିକୀ ।
ପ୍ରେତାବଧାରଣନ୍ତସ୍ୟ କର୍ତ୍ତବ୍ୟଂ ସୁତ ବାନ୍ଧବୈଃ ॥
ଯନ୍ମାସି ଯଦହର୍ଯାତ ସ୍ତନ୍ମାସି ତଦହଃ କ୍ରିୟା ।
ବିନାଜ୍ଞାନେ କୁହୂସ୍ତସ୍ୟ ଆଷାଢ଼ସ୍ୟା ଥବା କୁହୂଃ ॥
ଇତି ଯମଃ ।

ଯଦି ଉକ୍ତ ବ୍ୟକ୍ତିର ବିଦେଶ ଗମନସମୟ ଅର୍ଥାତ୍ ମାସାଦି କେହି ଜାଣନ୍ତି ନାହିଁ ତେବେ ତାହାର ଆଦ୍ୟ ଶ୍ରାଦ୍ଧ ମାଘ ଅଥବା ଅଗ୍ରହାୟଣ ମାସର ଅମାବସ୍ୟାରେ ହେବ ଆଉ ସାମ୍ବତ୍ସରିକ ଶ୍ରାଦ୍ଧାଦି ମଧ୍ୟ ଏହି ଦିନରେ ହେବ ଆଉ ଶ୍ରବଣ ବିଷୟରେ ପୂର୍ବରେ ଯେଉଁ ନିୟମ କଥିତ ହୋଇଅଛି ତାହା ସୁଦ୍ଧା ଏହିସ୍ଥଳରେ ଘଟିବ । ପ୍ରମାଣଂ ଯଥା;—

ମୃତସ୍ୟାହୋ ନଜ୍ଞାନାତ ମାସଂ ବାପି କଥଞ୍ଚନ ।
ତେନ କାର୍ଯ୍ୟ ମମାବସ୍ୟାଂ ଶ୍ରାଦ୍ଧଂ ମାଘେଽଥ ମାର୍ଗିକେ ॥
ପ୍ରଭାସ ଖଣ୍ଡଂ

·—+⊂(※)⊃+—·

[ ଅଥ ତର୍ପଣ ବିଧିଃ । ]

ପ୍ରତ୍ୟହ ସ୍ନାନ ଦାନକରି ଦେବତା ଋଷି ଓ ପିତୃଗଣଙ୍କର ଉଦ୍ଦେଶ୍ୟରେ ଜଳାଞ୍ଜଳି ଦାନର ନାମ ତର୍ପଣ । ତର୍ପଣ ପ୍ରତ୍ୟହ କର୍ତ୍ତବ୍ୟ ଅପର ପକ୍ଷରେ ତିଳ ମିଶ୍ରିତୋଦକରେ ତର୍ପଣ କରିବ । ଆଉ ପ୍ରାତ୍ୟାହିକ ତିଳ ତର୍ପଣରେ ମଧ୍ୟ ଦୋଷନାହିଁ । କେବଳ ନିମ୍ନଲିଖିତ ନିୟମରେ ତତ୍ଦିନରେ ତର୍ପଣ କରିବ ନାହିଁ ।

ରବି ଶୁକ୍ର ଦିନେ ଚୈବ ଦ୍ୱାଦଶ୍ୟାଂ ଶ୍ରାଦ୍ଧବା ସରେ ।

ସପ୍ତମ୍ୟାଂ ଜନ୍ମ ଦିବସେ ନକୁର୍ଯ୍ୟାତ୍ତିଲ ତର୍ପଣଂ ॥ ସ୍ମୃତିଃ
ସଂକ୍ରାନ୍ତ୍ୟାଂ ନଶିସପ୍ତମ୍ୟାଂ ରବି ଶୁକ୍ର ଦିନେତଥା ।
ଶ୍ରାଦ୍ଧେ ଜନ୍ମ ଦିନେଚୈବ ନକୁର୍ଯ୍ୟାତ୍ତିଲ ତର୍ପଣଂ ॥

ରବି ବାର, ଶୁକ୍ରବାର ଦ୍ୱାଦଶୀ ଶ୍ରାଦ୍ଧଦିନ, ସପ୍ତମୀ ଜନ୍ମଦିନ ସଂକ୍ରାନ୍ତି ଅମାବସ୍ୟା, ଏହି ସକଳ ଦିବସରେ ତିଳ ଦ୍ୱାର୍ ତର୍ପଣ କରିବ ନାହିଁ ।

ଅୟନେ ବିଷୁବେ ଚୈବ ସଂକ୍ରାନ୍ତ୍ୟାଂ ଗ୍ରହଣେ ସ୍ତୁତ ।
ଉପାକର୍ମଣି ଚୋତ୍ସର୍ଗେ ଯୁଗାଦୌମୃତବାସରେ ॥
ସୂର୍ଯ୍ୟଶୁକ୍ରାଦିବାରେଽପି ନଦୋଷସ୍ତିଲତର୍ପଣେ ॥ ସ୍ମୃତିଃ

ଉତ୍ତରାୟଣ, ଓ ଦକ୍ଷିଣାୟନ ସଂକ୍ରାନ୍ତି, ଗ୍ରହଣ, ଉପାକର୍ମ ଉତ୍ସର୍ଗ କାରଣ, ଯୁଗାଦ୍ୟ, ଓ ମୃତାହ ଯଦ୍ୟପି ରବି କି ଶୁକ୍ରବାରରେ ହୁଏ ଆଉପୂର୍ବୋକ୍ତ ତଥ୍ୟାଦି ପ୍ରାପ୍ତହୁଏ ତଥାପି ତିଳତର୍ପଣରେ ଦୋଷନାହିଁ ।

ଅନ୍ୟଚ ।

ତୀର୍ଥେ ତଥିବିଶେଷେଚ ଗଙ୍ଗାୟାଂ ପ୍ରେତପକ୍ଷକେ ।
ନିଷିଦ୍ଧେଽପି ଦିନେକୁର୍ଯ୍ୟାତ୍ତର୍ପଣଂ ତିଳମିଶ୍ରିତଂ ।
ଇତି ମଦନପାରିଜାତଧୃତଂ ।

ତିଥିବିଶେଷ ଅର୍ଥାତ୍ ନିଷିଦ୍ଧତିଥିରେ କୌଣସି ତୀର୍ଥ ବା ଗଙ୍ଗା ବା ପ୍ରେତପକ୍ଷ, ଏଥିରେ ତିଳମିଶ୍ରିତ ତର୍ପଣରେ ଦୋଷନାହିଁ ।

ଦ୍ୱାଦଶ୍ୟାଂ ପୌର୍ଣ୍ଣମାସ୍ୟାଞ୍ଚ ସଂକ୍ରାନ୍ତ୍ୟାଂ ଶ୍ରାଦ୍ଧବାସରେ ॥
ଅମାବସ୍ୟାଞ୍ଚ ବସ୍ତ୍ରାଣାଂ ନକୁର୍ଯ୍ୟାତ୍ ପୀଡ଼ନଂ ନୃପ ॥

ଦ୍ୱାଦଶୀ, ପୌର୍ଣ୍ଣମାସୀ ସଂକ୍ରାନ୍ତି, ଶ୍ରାଦ୍ଧଦିନ, ଅମାବସ୍ୟା ଏଥିରେ ତର୍ପଣକାଳରେ ବସ୍ତ୍ର ନିଷ୍ପୀଡ଼ନଜଳ ଦେବନାହିଁ ।

ଇତି ତିଥିକୃତ୍ୟବ୍ୟବସ୍ଥା ସମାପ୍ତା ।